ପଞ୍ଚମେଶ ସ୍ତ୍ରୀଗ୍ରହ ହୋଇଥିବ । ସ୍ତ୍ରୀଗ୍ରହମାନଙ୍କ ସ୍ତ୍ରୀରାଶିରେ ଥିବ । ଏଥି ଏକ ଯୋଗେ କନ୍ୟା ପ୍ରଥମେ । ନପୁଂସକଯୋଗେ ଷଣ୍ଢ ଏ କ୍ରମେ ।

କାରକସ୍ଥିତରାଶେର୍ବା ପଞ୍ଚମେ ଚନ୍ଦ୍ରସଂଖ୍ୟୟା ।

ନୀଚାସ୍ତମୂଢ ଗହ ନାଂ ଚନ୍ଦ୍ରାନ୍ ତ୍ୟକ୍ତ୍ୱା ସୁତାନ ବଦେତ୍ ।

ପୁତ୍ରକାରକ ସଂଯୁକ୍ତ ରାଶିର । ଅଷ୍ଟବର୍ଗ ସାଧ ବା ପଞ୍ଚମର । ଗ୍ରହ ନୀଚ, ଶତ୍ରୁ, ଅସ୍ତ ବନ୍ଦ୍ରଙ୍କୁ । ବର୍ଜିତ କରି ସନ୍ତାନ ସଂଖ୍ୟାକୁ ।

ସୁତସ୍ଥାନେଶକରଣାତ୍ ସୁତଭାଂଶକାଦ୍ବଦେତ୍ ।

ରଶ୍ମିକାଲେର୍ଗୁରୋର୍ବାପି ବଲେ ହର୍ଷ ବଦେତ୍ତଦା ।

ପୁତ୍ରପତିର କରଣ ସଂଖ୍ୟାରୁ । ଅଥବା ପୁତ୍ରଭବର ଅଂଶରୁ । ଅଥବା ଗୁରୁର ରଶ୍ମିମାନରୁ । ସେହୁ ବଲିଷ୍ଠ ଗଣିବ ତାଠାରୁ ।

ଲଗ୍ନପୁତ୍ରେଶ୍ୱରାଭ୍ୟାନ୍ତୁ ମିତ୍ରତ୍ୱେନୈବ ମିତ୍ରତା ।

ଶତ୍ରୁତ୍ୱେ ଶାତ୍ରବଂ ପ୍ରୋକ୍ତଂ ସମତ୍ୱେ ସମତା ଭବେତ୍ ।

ଲଗ୍ନେଶ ପୁତ୍ରେଶ ହୋଇଲେ ମିତ୍ର । ପୁତ୍ର ମିତ୍ର ହୁଏ, ସମେ ସମତ୍ତ୍ୱ । ଶତ୍ରୁ ହେଲେ ଶତ୍ରୁ ହୁଏ, ଏ ସତ୍ୟ ।

ଲଗ୍ନପୁତ୍ରେଶ୍ୱରୌ କେନ୍ଦ୍ରୌ ପରସ୍ପରନିରୀକ୍ଷିତୌ ।

ପରସ୍ପରଗୃହାଂଶସ୍ଥୌ ଶୁଶ୍ରୂଷାଂ କୁରୁତେ ସୁତଃ ।

ଅନ୍ୟୋନ୍ୟ ଦୃଷ୍ଟିରେ ବା ପରସ୍ପର । ଗୃହେ ଥିଲେ ଲଗ୍ନେଶ ପୁତ୍ରେଶ୍ୱର । ପୁତ୍ର ଶୁଶ୍ରୂଷା କରଇ ପିତାର ।

ଲଗ୍ନଂ ପଶ୍ୟତି ବା ପୁତ୍ରନାଥେ ଲଗ୍ନାଦ୍ୟୁତେଥବା ଯଦି ।

ଲଗ୍ନେଶ୍ୱରେ ସୁତକ୍ଷେତ୍ରେ ବା ପୁତ୍ରୋ ବାକ୍ୟବଶାନୁଗଃ ।

ପୁତ୍ରେଶ ଲଗ୍ନ ଥିଲେ ବା ଦେଖିଲେ । ଲଗ୍ନକୁ, ଲଗ୍ନେଶ ପଞ୍ଚମେ ଥିଲେ । ଏ ଯୋଗେ ପୁତ୍ର ବଶେ ପିତା ବୋଲେ ।

ସୁତସ୍ଥାନେଶ୍ୱରେ ଦୁଃସ୍ଥେ ଲଗ୍ନେଶେନାପି ବୀକ୍ଷିତେ ।

ସଂଦୃଷ୍ଟେ କୁଜରାହୁଭ୍ୟାଂ ନିତ୍ୟଂ ପିତୃବିଦ୍ୱେଷକଃ ।

ପୁତ୍ରପତି ଥିଲେ ଅଶୁଭସ୍ଥାନରେ । ଲଗ୍ନପତି ଦୃଷ୍ଟି ଥିଲେ ତାଠାରେ । କୁଜରାହୁଦୃଷ୍ଟି ରହିଲେ ତହିଁ । ପୁତ୍ର ପିତାକୁ ସର୍ବଦା ନିନ୍ଦଇ ।

ପଞ୍ଚମେ ଗୁରୁଶୁକ୍ରାଭ୍ୟାଂ ସକରବା ଯଦି ବାଥବା ।

ଏତେଷାଂ ଭବନେ ବାପି ସୋଽପ୍ୟୁଂ ନୋଜନ୍ମିତା ଭବେତ୍ ।

ସୂର୍ଯ୍ୟ ଗୁରୁ କିମ୍ବା ଭୃଗୁନନ୍ଦନ । ବାସକରିଥିଲେ ପଞ୍ଚମସ୍ଥାନ । ଅବା ଏମାନଙ୍କ ଗୃହେ ପଞ୍ଚମ । ହେଲେ ପିତାଙ୍କୁ ଚଳାଏ ହୁକୁମ ।

ତୃତୀୟେଶେ ତୃତୀୟସ୍ଥେ ପଞ୍ଚମେଶେ ସୁଖଂଗତେ ।
ଶୁଭେଗ୍ରହଶୋଽସଂଯୁକ୍ତେ ଜାତୋ ଭ୍ରାତୃସୁଖୀ ଭବେତ୍ ।

ତୃତୀୟେଶ ଥିବ ତୃତୀୟଘରେ । ପଞ୍ଚମେଶ ରହିଲେ ଚତୁର୍ଥରେ । ଶୁଭ ବା କଛ ଗ୍ରହଯୋଗ ଥିଲେ । ପିତାଙ୍କୁ ସୁଖ ଏଯୋଗ ହେଲେ ।

ଅନ୍ନଦାନପରେ ଷଷ୍ଠ୍ୟଂ ପଞ୍ଚମେଶେ ଶୁଭଂଗତେ ।
ଶୁଭଗ୍ରହୈଃ ସମାଯୁକ୍ତେ ଭୁକ୍ତିଶେ ଶୁଭସଂଯୁତେ ।

ପଞ୍ଚମେଶ ଥିବ ଶୁଭଗୃହରେ । ଅଥବା ରହିଲେ ଶୁଭ ସଙ୍ଗରେ । ନବମେଶ ହୋଇଲେ ଶୁଭଯୁତ । ଅନ୍ନଦାତା ହୁଅଇ ହେତୁ ଷଷ୍ଠ୍ୟ ।

ହୃଦୟେ ପାପସଂଯୁକ୍ତ ତଦୀଶେ ପାପସଂଯୁତେ ।
ପାପଗ୍ରହାଣାଂ ମଧ୍ୟସ୍ଥେ ହୃଦ୍‌ରୋଗଂ ବ୍ରେଗମାଦିଶେତ୍ ।

ପଞ୍ଚମ ଅବା ପଞ୍ଚମ-ଈଶ୍ୱର । ରହିଲେ ପାପଦ୍ୱୟର ମଧ୍ୟ । ଅଥବା ଥିଲେ ପାପ ସଙ୍ଗତରେ । ସଦା ହୃଦୟ ରୋଗଯୁକ୍ତ କରେ ।

ତଦୀଶସ୍ଥାଂଶରାଶୀଶେ କ୍ରୂରଷଷ୍ଠ୍ୟାଂଶସଂଯୁତେ ।
କ୍ରୂରଗ୍ରହେଣ ସଂଦୃଷ୍ଟେ ହୃଦ୍‌ରୋଗଂ ଶଲ୍ୟମାଦିଶେତ୍ ।

ପଞ୍ଚମେଶ ଯେ ନବାଂଶେ ରହନ୍ତି । ତା ପତି କ୍ରୂରଗ୍ରହଦୃଷ୍ଟ ହୋଇ । କ୍ରୂରଷଷ୍ଠି ଅଂଶେ କରିଲେ ବାସ । ହୃଦୟେ ଶୂଳାଦି ରୋଗପ୍ରକାଶ ।

ଚନ୍ଦ୍ରାଦ୍ୟେ ନାଶଭାବସ୍ଥେ ନାଶସ୍ଥାନେଶସଂଯୁତେ ।
ନୀଚାରମୂଢ଼ଖର୍ବେ ବା ହୃଦ୍‌ରୋଗଂ ରୋଗମାଦିଶେତ୍ ।

ପଞ୍ଚମେଶ ଥିଲେ ବ୍ୟୟଗୃହରେ । ଅବା ଥିଲେ ବ୍ୟୟପତି ସଙ୍ଗରେ । ଅସ୍ତଗତ ବା ନୀଚଶତ୍ରୁ ଘରେ । ଥିଲେ, ରୋଗ ଜନମଇ ହୃଦରେ ।

ଅଥ ଷଷ୍ଠଭାବଫଳଂ ।

ଅରିଭବନାଦରିରୋଗ କ୍ଷତବ୍ରଣ କ୍ଲେଶ ମାତୁଳାଦିବଦେଶାନ୍ ।
ମଧୁରାଦିଷଡ୍‌ରସାଂଶ ନ୍ ଗ୍ରହବଶାଦ୍ୱଦେତ୍ ପ୍ରାଜ୍ଞଃ ।

ଷଷ୍ଠ ଭବନରୁ କହିବ ଶତ୍ରୁ, ରୋଗ, କ୍ଷତ, କ୍ଲେଶ, ମାମୁଁ, ଶୋକ, ରୋଗାଦି ମଧୁରାଦି ଷଡ଼ରସ ଜ୍ଞାନାଂଶ ।

ଷଷ୍ଠେଶ୍ୱରେ କ୍ରୂରଯୁତେ ବିଲଗ୍ନେ ରନ୍ଧ୍ରସ୍ଥିତେ ବା ତନୁଦଃ ଶରୀରେ ।
ଜର୍ଜ୍ଜସ୍ଥିତେ ତଦ୍ଦୃଶ୍ୟଖେଚରେନ୍ଦ୍ରେ ବ୍ରଣପ୍ରଦୋଽଙ୍ଗେ ଶୁଭଦୃଷ୍ଟିଯୁକ୍ତ ।

ଷଷ୍ଠେଶ୍ୱର ପାପଯୁତ ହୋଇ ଲଗ୍ନେ ଅବା ଅଷ୍ଟମେ ରହିଲେ । କିମ୍ବା ଦଶମରେ ଅଶୁଭଦୃଷ୍ଟିରେ ଥିଲେ, ଜନ୍ମେ ବ୍ରଣ ବୋଲେ ।

ଟିହ୍ନାବଶତ୍ୱାଦପି ଯୋଜନୀୟଂ ସ୍ତ୍ରବେଶତସ୍ୱାବଦୃଷ୍ଟି ଯୋଗାତ୍ ।
ବଳାବଳେନାପି ବିକଳ୍ପ୍ୟ ସର୍ବଂ ତେଷାଂ ବ୍ରଣଂ ବା କଥୟନ୍ତି ତଜ୍ଜ୍ଞାଃ ॥

ପିତୃ ପ୍ରଭୃତି ଭାବର ଷଷ୍ଠସ୍ଥାନ କାବଲୁ ଏହିପ୍ରକାର । ଗ୍ରହଦୃଷ୍ଟି, ଯୋଗ, ବଳାବଳ ଜାଣି ବ୍ରଣ କହିବ ବିଚାର ॥

ଶିରୋଲଲାଟେମୁଖଂ କଣ୍ଠଂ ଶ୍ରୋଣଂ ନାସା ଚ ଗୁହ୍ୟକଂ ।
ପାଣିପାର୍ଶ୍ୱେ ଦୃଶୌ ପାଦୌ ପ୍ରସର୍ବୌ କ୍ରିୟମାଦଶେତ୍ ॥

ମେଷ ଆଦିରାଶି କ୍ରମରେ ଜାଣିବ ଶିର, ମୁଖ, କଣ୍ଠ, କାନ । ନାକ, ଗୁହ୍ୟ, ହାତ ବଳ, ନେତ୍ର, ପଦ, ପାଦତଳ, କାଖସ୍ଥାନ । ଷଷ୍ଠଭାବ ଯହିଁ, ଷଷ୍ଠେଶ ବା ଯହି ପୂର୍ବଯୋଗକୁ ଲଭନ୍ତି । ପାପ ସମ୍ବନ୍ଧରୁ ସେହି ଅଙ୍ଗେ ନର ବ୍ରଣାଦିରୋଗ ଲଭଇ ।

ଲଗ୍ନେଶଭୂସୂନୁଶଶାଙ୍କସୂନୁାଃ ସହସ୍ଥିତାଃ ସୌମ୍ୟଗୃହେ ବ୍ୟୟେ ବା ।
ଅପାନରୋଗଂ ତ୍ୱଥବା ପଚନ୍ତଂ ପଶ୍ୟନ୍ତି ଷଷ୍ଠଂ ମୁନୟୋ ବଦନ୍ତି ॥

ଲଗ୍ନେଶ, କୁଜ, ବୁଧ ଏକତ୍ରେ ଥାଇ ଯେବେ ଚତୁର୍ଥେ ବା ବ୍ୟୟେ । ଅବା ଯହି ଥାଇ ଷଷ୍ଠେ ଷଷ୍ଠେ ଦୃଷ୍ଟି ଦେଲେ ଗୁହ୍ୟ ରୋଗ ହୁଏ ॥

ଶଶାଙ୍କତତ୍ସୂନୁବିଲଗ୍ନନାଥାଃ ସରାହବଃ କେତୁଯୁତାସ୍ତଦଙ୍ଗେ ।
ବୈଶ୍ୟନ୍ତୁ କୁଷ୍ଠଂ ମୁନୟୋ ବଦନ୍ତି ଶୁଭେକ୍ଷିତାସ୍ତନ୍ନ ଭବେତ୍ତଦାନାଂ ॥

ଚନ୍ଦ୍ର ବୁଧ ଲଗ୍ନନାଥ ରାହୁ ଅବା କେତୁ ସଙ୍ଗେ ଷଷ୍ଠେ ଥିଲେ । ତପଣକୁଷ୍ଠ ଜନମେ ରାଶିତୁଲ୍ୟ ଅଙ୍ଗେ ଶୁଭ ଦୃଷ୍ଟି ଦେଲେ ।

ବିନା ବିଲଗ୍ନାଧିପତିଂ ଗ୍ରହେଷୁ ଲଗ୍ନସ୍ଥିତେଷ୍ୱନ୍ତ ତୁ କୁଷ୍ଠଭାକ୍ ସ୍ୟାତ୍ ।
ପିତ୍ରାଦିକାନାଂ ଫଳମେବ ମାତ୍ରମୁନୀଶ୍ୱରାଃ ଭାବକଭାବନାଥୈଃ ॥

ଲଗ୍ନେଶ୍ୱରବିନା ପୂର୍ବଗ୍ରହଯୋଗ ଲଗ୍ନେ ଥିଲେ କୁଷ୍ଠ ହୁଏ । ପିତୃ ପ୍ରଭୃତି ଭାବରେ ଏହିଯୋଗ ହେଲେ ତାଙ୍କର କହିବ । ଷଷ୍ଠ ଏତି କମ୍ବା କାରକ ଖେଚର ପୂର୍ବଯୋଗ ଯୁକ୍ତହେଲେ । ଏହିପରି ଫଳ ଜାଣିବ, ପିତୃ ମାତୃ ଭ୍ରାତାଦି ଭାବରୁ ଲେ ।

ପୈତ୍ତ୍ୟଂ ତୁ କୁଷ୍ଠଂ କୁଜସଂଯୁତେଷୁ ଶୈତ୍ୟଂ ଭବେଚ୍ଚନ୍ଦ୍ରସମନ୍ୱିତେଷୁ ।
ରକ୍ତଂ ତଦା ସୂର୍ଯ୍ୟସମନ୍ୱିତେ ବା ଗ୍ରହୋକ୍ତଦେଶେ ହ୍ୟବୃତଂ ତଦାହୁଃ ॥

ପୂର୍ବଗ୍ରହଯୋଗେ କୁଜ ଯୁକ୍ତଥିଲେ ପୈତ୍ତିକ କୁଷ୍ଠ ହୁଅଇ । ଚନ୍ଦ୍ରଯୋଗେ ଶ୍ଲେଷ୍ମ, ରବିଯୋଗେ ରକ୍ତ, ରାଶିତୁଲ୍ୟ ଅଙ୍ଗେ ହୋଇ ।

ଲଗ୍ନେଶଷଷ୍ଠାଧିପତି ଦିନେଶଯୁକ୍ତୌ ଜ୍ୱରଂ ଚନ୍ଦ୍ରସମନ୍ୱିତୌ ଚେତ୍ ।
ଜଲେନ ଗଣ୍ଡଂ କ୍ଷିତିସୂନୁଯୁକ୍ତେ ଯୁଦ୍ଧେନ ବା ସ୍ଫୋଟକରାଶିଉର୍ବୀ ।

ଲଗ୍ନେଶଷଷ୍ଠେଶେ ରବିଯୋଗେ ଜ୍ୱର, ଚନ୍ଦ୍ରଯୋଗେ ଜଳରୋଗ । (ଜଳୋଦର) କୁଜଯୋଗେ ଯୁଦ୍ଧେ ଅବା ସ୍ଫୋଟକ ଯୋଗ କଷ୍ଟ ତବେ ଲୋକ ॥

ଚୈତ୍ରେନ ରୋଗେଣ ବୁଧେନ ଯୁକ୍ତୌ ଷଷ୍ଠ୍ୟାଧିପୌ ଜୀବସମନ୍ୱିତୌ ଚେତ୍ ।
ଶୁକ୍ରେଣ ଗ୍ରାମ୍ୟାବପଦଂ ବଦନ୍ତି ମନ୍ଦେନ ମୀଗ୍ନ୍ୱଛଲରୋଗମାହୁଃ ॥
ସରାହୁକେତୂ ଯଦି ସର୍ପପୀଡ଼ା ଚୌରାଗ୍ନି ଶର୍ବାତଭୟାତ୍ ପ୍ରମାଦଃ ।

ବୁଧଯୋଗେ ଚନ୍ଦ୍ରାରୋଗ, ଗୁରୁଯୋଗେ ବ୍ୟାଧି ବିହୀନ ଶରୀର । ଶୁକ୍ରଯୋଗେ ନଗ୍ନ ମରେ, ଶନିଯୋଗେ ଦୃଷ୍ଟି ବାୟୁରୋଗ ତାର । ରାହୁ ଅବ କେତୁଯୋଗେ ସର୍ପ, ଚୌର, ଅଗ୍ନିବାତ ଦୋଷକର ॥

ଷଷ୍ଠେଶ୍ୱରଶ୍ଚନ୍ଦ୍ରସୁତେନ ଯୁକ୍ତଃ ପାପୈର୍ବିଲଗ୍ନେ ସ୍ୱସୁମନ୍ଦ ଶିଶ୍ନଂ ।
ଛିନ୍ନତ୍ୟସୌ ସୌମ୍ୟଦୃଶା ବିହୀନଃ ସଭୂମପୁତ୍ରୋ ଯଦି ଲିଙ୍ଗରୋଗାତ୍ ॥

ଷଷ୍ଠେଶ୍ୱର ଶଶିପୁତ୍ରସଙ୍ଗେ ପାପି ଲଗ୍ନେ ଥିଲେ ଛେଦେ ଲିଙ୍ଗ । ଶୁଭ ଦୃଷ୍ଟି ହୀନ ଷଷ୍ଠେଶ କୁଜସଙ୍ଗେ ଥିଲେ ରୋଗୁ ଲିଙ୍ଗ ।

କର୍ମେଶ୍ୱରଃ ଶୁକ୍ରଯୁତୋ ରିପୁସ୍ଥଃ କଳତ୍ରଷଣ୍ଢତ୍ୱମୁଦାହରନ୍ତି ।
ସପ୍ତମେଶ ଶୁକ୍ରସଙ୍ଗେ ଷଷ୍ଠେ ଥିଲେ ତାହାରି ସ୍ତ୍ରୀ ଅଇ ଷଣ୍ଢ । (ନପୁଂସକା)
ଷଷ୍ଠେଶଲଗ୍ନାଧିପତି ସମେତୌ କେନ୍ଦ୍ରେ ତ୍ରିକୋଣେ ଯଦି ବନ୍ଧନଂ ସ୍ୟାତ୍ ।
ସରାହୁକେତୂ ଯଦି କେନ୍ଦ୍ରକୋଣେ ବଦନ୍ତି ଶୃଙ୍ଖଳା ନିଗଡ଼ଂ ତଦାନୀଂ ॥

ଲଗ୍ନେଶଷଷ୍ଠେଶ ଶନିସଙ୍ଗେ କେନ୍ଦ୍ର, ତ୍ରିକୋଣେ ଥିଲେ ଜାଅଲ । ରାହୁ କେତୁ ସଙ୍ଗେ କେନ୍ଦ୍ରକୋଣେ ଥିଲେ ପାଦେ ଲାଗଇ ଜଞ୍ଜିର ।

ପିତ୍ରାଦିତଦ୍ ବନ୍ଧୁଭବନାଧିପୈଃ ତନ୍ନୂତ୍ତ ଫଳଂ ବା ଗଣିତା ବଦନ୍ତି ।
ତତଦ୍ଗ୍ରହାଣାଂ ପରିପାକକାଳେ ତଦନ୍ତର୍ଦଶାୟାମଥବା ବଦନ୍ତି ॥

ପିତୃ ପ୍ରଭୃତି ଭବନ କାରକରୁ, ଭବନାଥୁ ଏହୁପରି । ଫଳ କଷ୍ଟପ୍ରୁ କରୁ ତାହାର ଦଶା ଅନ୍ତରେ ଅବା ବିଚାରି ।

ଧର୍ମେ ଶନୌ ବା ସଗୁରୌ ତୃତୀୟେ କରଚ୍ଛିଦୋଽର୍କେ ନିଧନେ ବ୍ୟୟେ ବା ।
ବନ୍ଧୌ କଳନେ ନିଧନାନ୍ୱିତେ ବା କୁଜେନ ଯୁକ୍ତେ ଯଦି ବା ସଜୀବେ ।

ଧର୍ମେ ଶନିଥିଲେ, ତୃତୀୟେ ବା ଗୁରୁ, ଅଷ୍ଟମେ ବା ବ୍ୟୟେ ରବି । ଗୁରୁ କୁଜ ସଙ୍ଗେ ଚତୁର୍ଥେ, ସପ୍ତମେ, ଅଷ୍ଟମେ ବା ଥିଲେ ରବି । ତାହାର ଗଣକେ ଏ ଯୋଗରେ କରଚ୍ଛେଦନ କହନ୍ତେ ସମ୍ଭବ ॥

କର୍ମସ୍ଥିତାଶ୍ଚେଦ୍ରବି ରାହୁମନ୍ଦସୌମ୍ୟାଃ ପଦଚ୍ଛେଦଯୁତୋଽହି କାଙ୍କ୍ଷଃ ।
ଶୁକ୍ରେନ୍ଦୁଦୃଷ୍ଟେ ଧନସାଧିନାଥେ ପାପେ ଶନୌ ବା ଫଣିନାଥଯୁକ୍ତେ ॥
ଧୂମ୍ରାଦିକଷ୍ଟାଂଶସମନ୍ୱିତେ ବା ବଚ୍ଛେଦନଂ ତଚ୍ଛିରସୋ ବଦନ୍ତି ।

ରାହୁ ଶନି ବୁଧ ଏକଯୋଗେ ଦଶମରେ ଥିଲେ ପାଦଚ୍ଛେଦ । ଶୁକ୍ରଗୁରୁ ଯେବେ

ଶତ୍ରୁ ଦେଖନ୍ତି ମସ୍ତକ ହୁଅଇ ଛେଦ । କୁଜ ଶନି ହୁହେଁ ରାହୁସଙ୍ଗେ ଥିଲେ ଅଥବା ନୃପ ଷଷ୍ଠାଂଶେ । ହୁଏ ଶିରଶ୍ଛେଦ ଭାଷେ ଯୋଗ ସିଦ୍ଧ ଥିଲେ ଭବସଭଦୋଷେ ।

ମନ୍ଦେ ବିଲଗ୍ନେ ମଦନେ ସଗୁଡୌ ଭର୍ଗାତ୍ମଜେ ଖ୍ଯଗ ବନତନେ ଚ ।

କ୍ଷୀଣେ ଶଶାଙ୍କେ ମଦଗଣି ଯୁକ୍ତେ ଶକ୍ତିନିହନ୍ତୁଃ ସଂଭବେତ୍ପୃଦେନ ।

ଲଗ୍ନେ ଥିବ ଶନି, ସପ୍ତମରେ ରାହୁ, ଦଶମେ ଭୃଗୁନନ୍ଦନ । କୃଷ୍ଣପକ୍ଷ ଶଶୀ ସପ୍ତମରେ ଥିଲେ ବ୍ରତଗୋଳ ହୁଏ ଛିନ୍ନ ।

ଭୂସୂନୁଲଗ୍ନେ ଯଦବା ତଦଂଶେ ସୂର୍ଯ୍ୟାଦ୍ଧ୍ରଗେ, କୃଷ୍ଣନିଶାକରେ ଭୂ ।

ଫଣୀତ ବନ୍ଧ୍ରମୃଗସଂଯୁତେଽର୍କେ ଭସ୍ମୀଭୂତେ ହ୍ୟୁଦରସ୍ୟ ଭେଦଃ

କୁଜଘରେ ଅଥବା କୁଜ ନବାଂଶରେ ଥିଲେ ରବି କୃଷ୍ଣଶଶୀ । ରାହୁ ବୁଧଯୁକ୍ତ ହୋଇ ଅଷ୍ଟ ହେଲେ ପେଟ ଫୁଟି ଥାଏଂ ଭଣନ୍ତି ।

ମହୋଦୟେ ସୌମ୍ୟବୃଷ୍ଟା ଶଶାଙ୍କେ ସର୍ପାର୍କଯୁକ୍ତ ଯଦ କୃଷ୍ଣଚନ୍ଦ୍ରେ ।

ଶସ୍ତ୍ରେଣ କୁକ୍ଷେର୍ଦଳନଂ ବଦନ୍ତି ଜାତସ୍ୟ ଦର୍ଶେ ମୁନୟୋ ମହାନ୍ତଃ ।

ଶନିଘରେ ଚନ୍ଦ୍ର ରବିରାହୁଯୁକ୍ତ ହୋଇ ଜନ୍ମ ଥିଲେ ବାସ । ଶସ୍ତ୍ରେ ଫୁଟି ପେଟ ଅମାବାସ୍ୟା ଜାତ ବାଳକର ଧଂଶେ ଭାଷ ।

କ୍ଷୀଣେ ଶଶାଙ୍କେ ଫଣିନାଥ ଦୃଷ୍ଟେ ସୌମ୍ୟୌ ଶିରସ୍ୟମ୍ୟଦକୃନ୍ତନଂ ସ୍ୟାତ୍

ଲଗ୍ନେ ଶନୌ ସୋଦସୁତେ ସ୍ୱଗେହେ ଭୂର୍ଯ୍ୟେ ଚତୁର୍ଥେ ସବୁଧେଽଥବ୍ରଜ୍ୟେ

ରାହୁ ଦେଖୁଥିଲେ ଶନିକୁ ଚନ୍ଦ୍ରମା କ୍ଷୀଣ ହେଲେ ଶିରନାଶ । ଲଗ୍ନେ ଶନି, ବୁଧ ଭୃଗୁସୁ ଚତୁର୍ଥ ସ୍ୱଗୃହେ ବା ଥିଲେ ଦୁଷ୍ଟ [ବାଦନ] ।

ଷଷ୍ଠାଷ୍ଟବ୍ୟଯେ ଚନ୍ଦ୍ରେ ଲଗ୍ନନାଥେନ ବୀକ୍ଷିତେ ।

ମନ୍ଦମାନ୍ଦ୍ୟଗୁସଂଯୁକ୍ତେ ତସ୍ୟ ଦୁର୍ମରଣଂ ବଦେତ୍ ।

ଲଗ୍ନନାଥ ଦୃଷ୍ଟିପଡେ ଅଷ୍ଟମରେ ଷଷ୍ଠେ ବା ଦ୍ୱାଦଶେ ଶଶୀ । ଶନି ବା ଗୁଳିକ ଯୁକ୍ତ ହୋଇଥିଲେ କଷ୍ଟେ ତା ମରଣ ଭଣନ୍ତି ।

ନୀଚସ୍ଥବମୂଢ଼ାଂଶେ ମନ୍ଦେ ପାପାଦ୍ଧ୍ୟବେକ୍ଷିତେ ।

ଖରଷଷ୍ଟ୍ୟଂଶସଂଯୁକ୍ତେ ତସ୍ୟ ଦୁର୍ମରଣଂ ବଦେତ୍ ।

ନୀଚରେ, ଶତ୍ରୁଘରେ, ବା ଖରଷଷ୍ଟିଅଂଶେ ଅଥବା ଅସ୍ତ ହୋଇ । ଥିଲେ, ପାପଯୁତ ପାପଦୃଷ୍ଟ ଶନି ଏଯୋଗେ କଷ୍ଟେ ମରଇ ।

ରନ୍ଧ୍ରେଶ୍ୱରସ୍ଥିତନବାଂଶେ ପାଶସର୍ପାଦସଂଜ୍ଞକେ ।

ଦୃକ୍କାଣେ ମରଣଂ ବ୍ୟାଧେରୁଦ୍ବନ୍ଧାଦ୍ ବା ଭବେନ୍ନୃଣାଂ ।

ଅଷ୍ଟମେଶଯୁକ୍ତ ଦ୍ରେଷ୍କାଣର ସଂଜ୍ଞା ପାଶ ସର୍ପ ଆଦି ହେଲେ । ରୋଗକଷ୍ଟ ସହି ନପାରି ଦଉଡ଼ି ଦେଇ ମରଇ ସେ ହେଲେ ।

ମନ୍ଦମାନ୍ଦ୍ୟଗ୍ନିସଂଯୁକ୍ତେ ରନ୍ଧ୍ରେଶେନ୍ଦୁଦ୍ରେଷ୍କାଣଗେ ।
ତଥାବଧେର୍କଷ୍ଟେ ବା ଦ୍ୟୁତ୍ଭାଦ୍ୱା ମୃତିଂ ବଦେତ୍ ॥

ରନ୍ଧ୍ରେଶ ଥିବା ଦ୍ରେଷ୍କାଣପତି ଯେବେ ମାନ୍ଦ୍ୟ ଶନି ଗୁଳିକରେ । ବକ୍ର ହୋଇଥିଏ * ଶନି ବା ଏରୂପେ ଥିଲେ ମୃତ୍ୟୁବନ୍ଧନରେ ।

ଷଷ୍ଠାଷ୍ଟମେଶେ କ୍ରୌର୍ଯ୍ୟେ ବା ଷଷ୍ଠମେଶସମନ୍ୱିତେ ।
ମନ୍ଦମାନ୍ଦ୍ୟଗ୍ନିସଂଯୁକ୍ତେ ଷଷ୍ଠାଂଶେ ଯୁଦ୍ଧତୋ ମୃତିଃ ।

କୁଜ ଷଷ୍ଠ ବା ଅଷ୍ଟମ ଈଶ ହୋଇ ଷଷ୍ଠମେଶସଙ୍ଗେ ଥିବେ ।
ଷଷ୍ଠଷଷ୍ଟ୍ୟଂଶେ ଶନିମାନ୍ଦ୍ୟ ଯୋଗେ ଯୁଦ୍ଧେ ମୃତ୍ୟୁହୁଏ ॥

ଯୁଦ୍ଧେନ ମରଣଂ ବ୍ରୂୟାଚ୍ଛନିଯୁକ୍ତସ୍ଥିତେ ପସେ ।
କୁଜେନ ବୀକ୍ଷିତେ ଯୁକ୍ତ ନବାଂଶେ ଚ ତଦଂଶକେ ॥

କୁଜଯୁକ୍ତ ଅବା ଦୃଷ୍ଟ, କୁଜଘରେ କିମ୍ବା କୁଜ ନବାଂଶରେ । ଶନି ଥିବା ଦ୍ରେଷ୍କାଣପତି ରହିଲେ ଯୁଦ୍ଧରେ ମାରକ କରେ ।

ରବିଭୌମୌ ନବନ୍ୟୋଃନ୍ୟଂ ପରସ୍ପରନିରୀକ୍ଷିତୌ ।
ପରସ୍ପରଗୃହାଂଶସ୍ଥୌ ଦ୍ୱନ୍ଦ୍ୱଯୁଦ୍ଧାନ୍ମୃତିଂ ବଦେତ୍ ।

ରବିକୁଜଦୁହେଁପରସ୍ପର ଦୃଷ୍ଟ କିମ୍ବା ପରସ୍ପର ଘରେ । ପରସ୍ପର ନବମାଂଶେ ବା ରହିଲେ ମାରନ୍ତି ଦ୍ୱନ୍ଦ୍ୱଯୁଦ୍ଧରେ ।

ଅଷ୍ଟମେ ବହବୋ ପାପାଃ ଭୌମସ୍ଥିତାଂଶକାଃ ।
ଷଷ୍ଠଷଷ୍ଟ୍ୟଂଶକଯୁତାଃ ସଦ୍ୟସ୍ତନ୍ମରଣଂ ବଦେତ୍ ।
ଇତ୍ୟଷ୍ଟମଭାବଫଳଂ ॥

କୁଜଘରେ କିମ୍ବା କୁଜନବାଂଶରେ ଅଷ୍ଟମ ବା ବହୁପାପ । କ୍ରୂର ଷଷ୍ଟ୍ୟଂଶେ ଥିଲେ ତତକାଳେ ମରଣ ଦିଅଇ ଲେଖ ।

ଅଳ୍ପାୟୁର୍ଯୋଗଫଳଂ ।

ନୀଚମୂଢ଼ ରିପୋଃ ସ୍ଥାଃ ସୌମ୍ୟାଃ ଯଦି ପରାଜିତାଃ । *
ପାପାଂଶସ୍ଥାଃ ପାପଯୁତାଃ ସଦ୍ୟସ୍ତସ୍ୟ ମୃତିଂ ବଦେତ୍ ।

ଶୁଭଗ୍ରହମାନେ ନୀଚରେ ବା ଅସ୍ତମିତେ ବା ଶତ୍ରୁଗୃହରେ, ପରାଜିତ ଅବା ପାପଯୁତ ହୋଇ ଥିଲେ ପାପଗ୍ରହାଂଶରେ * । ତତ୍କାଳେ ମରଣ ଲଭଇ ଜାତକ ଜନମିଲେ ଏ ଯୋଗରେ ।

* ଶନିଥିବା ଦ୍ରେଷ୍କାଣପତି ଶନି କିମ୍ବା ଗୁଳିକଯୁକ୍ତ ହେଲେ ବନ୍ଧନମୃତ୍ୟୁ ହୁଏ ।

* ଶୀଘ୍ରଗତି ଗ୍ରହ ଅଳ୍ପଗତି ଗ୍ରହର ପଛରେ ଥାଇ ପୁଣି ତାହାଙ୍କୁ ଅତିକ୍ରମ କରି ଆଗକୁ ଗଲେ ଅଳ୍ପଗତି ଗ୍ରହ ତାହାଦ୍ୱାରା ପରାଜିତ ବୋଲି ଜାଣିବ ॥

* ଅରି ଶତ୍ରୁ ଗୃହ ଦ୍ରେଷ୍କାଣ ହୋରାଦି ଷଡ୍‌ବର୍ଗ ଜାଣିବ ॥

ସଦ୍ୟଃ ସ୍ୟାନ୍ମରଣଂ ତସ୍ୟ ଶଶିସ୍ଵନ୍ତ୍ରବନାଧିପାଃ ।
ରନ୍ଧ୍ରେଶବୀକ୍ଷିତାଃ ସର୍ବେ କ୍ରୂରାଂଶାନ୍ତରସଂଯୁତାଃ ।

ଅଷ୍ଟମେଶଦୃଷ୍ଟିଠାରେ ଶଶିସ୍ଥିତ ଯେବେ ରହିଥାଇ । ପାପଅଂଶେ ଥିବା ପାପଯୁକ୍ତ ହେଲେ ସଦ୍ୟମାରକ କରଇ ।

ଅଷ୍ଟମସ୍ଥୋ ଯଦା ସୌରିଃ ରକ୍ତପିତ୍ତଂ କରୋତି ହି ।
ଭୂଜଗୃହଗତେ ସତ୍ୟଂ ଦଶାକାଳେ ବିଶେଷତଃ ।

ଭୂଜଘରେ ଶନି ଅଷ୍ଟମରେ ଥିଲେ ରକ୍ତପିତ୍ତରୋଗ କରେ । ଅନ୍ୟକାଳେ ଯେବେ ଫଳ ନୋହିଥାଏ ଘଟେ ଦଶା ଅନ୍ତରରେ ॥

ରୋଗସ୍ଥାନଗତେ ସୂର୍ଯ୍ୟେ ତଦ୍ଭ୍ରତେ ପାପସଂଯୁତେ ।
ପାପଦୃଷ୍ଟିଯୁତେ ନାଭୌ ପୈତ୍ତିକାଦ୍ରଣମାଦିଶେତ୍ ।

ରବି ଥିବ ଷଷ୍ଠେ, ପାପଯୁକ୍ତ କିମ୍ବା ଦୃଷ୍ଟ ହୋଇଥିଲେ ଷଷ୍ଠ । ପିତ୍ତଦୋଷୁଁ ନାଭିମଣ୍ଡଳେ ହୁଅଇ ଉତ୍ପନ୍ନ ବ୍ରଣକଷ୍ଟ ।

ତଥାଭୂତେ ନିଶାନାଥେ କ୍ରୂରଦୃଷ୍ଟେ ତଦଂଶକେ ।
ବାତାର୍ଦ୍ଦିତୋ ଭବେଜ୍ଜାତୋ ରକ୍ତପିତ୍ତାର୍ଦ୍ଦିତଃ କୁଜେ ।

ଚନ୍ଦ୍ରମା ଷଷ୍ଠରେ ପାପଦୃଷ୍ଟ କିମ୍ବା ପାପନବାଂଶରେ ଥିଲେ । କରେ ବାତରୋଗ, ରକ୍ତପିତ୍ତ ଜନ୍ମେ କୁଜ ଏହିପରି ଥିଲେ ।

ଶ୍ଳେଷ୍ମବାତାର୍ଦ୍ଦିତଃ ସୌମ୍ୟେ ତଥାଭୂତେ ବିଶେଷତଃ ।
ଜୀବେ ତୁ ବିଦ୍ରଧିର୍ବାଚ୍ୟଃ ଶୁକ୍ରେ ମୂତ୍ରସାଦକୃତ୍ ।

ବୁଧ ସେହିପରି ଥିଲେ ବାତଶ୍ଳେଷ୍ମ, ଜୀବରେ ବିଦ୍ରଧି ହୋଇ । ଶୁକ୍ରଥିଲେ ସେପରି ମୂତ୍ରାଛସାବରୋଗପୀଡ଼ିତ କରଇ ।

ତଥାଭୂତେ ଶନୌ ଗୁଲ୍ମରୋଗୋ ବାତ ବିଶେଷତଃ ।
ସ୍ଵହ୍ନକେତୁସମାଯୁକ୍ତେ ବାଧା ପୈଶାଚିକୀ ସ୍ମୃତା ।

ସେହିପରି ଶନି ଥିଲେ ଗୁଲ୍ମରୋଗ ଅଧିକରେ ଆଏକର । ସ୍ଵହ୍ନକେତୁ ସେହିପରି ରହିଥିଲେ ପିଶାଚବାଧା ସଞ୍ଚର ।

ଚନ୍ଦ୍ରେ ଷଟ୍‌ସ୍ଥେ କୁଜଯୁତେ ଭ୍ରାନ୍ତପାଣ୍ଡ୍ଵାଦିରୋଗଯୁକ୍ ।
ସାରେ ଚନ୍ଦ୍ରେ ରବିଯୁତେ ଶୂଳବୈସର୍ପରୋଗଭାକ୍ ।

ମଙ୍ଗଳ ସହିତେ ଚନ୍ଦ୍ର ଷଷ୍ଠେ ଥିଲେ ପାଣ୍ଡୁ, ମୁଣ୍ଡବୁଲା କରେ । ରବିଚନ୍ଦ୍ର କୁଜ ଷଷ୍ଠରେ ରହିଲେ ଶୂଳ, ବିସର୍ପିକା ଧରେ ।

ଷଷ୍ଠେ କୁଜେ ବୁଧଯୁତେ ଭୃଗୁଚନ୍ଦ୍ରନିରୀକ୍ଷିତେ ।
କ୍ରୂରାଂଶକସମାଯୁକ୍ତେ କ୍ଷୟରୋଗାଃ ଭବନ୍ତି ହି ।

ଶୁକ୍ରଚନ୍ଦ୍ର ଦୃଷ୍ଟ ହୋଇ ବୁଧସଙ୍ଗେ କ୍ରୂରାଂଶରେ ଷଷ୍ଠଘରେ । କୁଜ ରହିଥିଲେ କ୍ଷୟ ରୋଗ ହୋଇ ମାନବକୁ ନାଶକରେ ।

ଶନ୍ୟାରସଂଯୁତେ ଷଷ୍ଠେ ରବିରାହୁନିରୀକ୍ଷିତେ ।
ଲଗ୍ନେଶ୍ୱରେ ହୀନବଲେ ଦୀର୍ଘରୋଗୀ ଭବେନ୍ନରଃ ।

ରବିରାହୁ ଦୃଷ୍ଟହୋଇ ଶନିକୁଜ ଷଷ୍ଠସ୍ଥାନେ ଥିଲେ ବହୁଁ । ଲଗ୍ନେଶର ହୀନବଳ ହୋଇଥିଲେ ଚିରରୋଗୀ ସେ ହବଇ ।

ଷଷ୍ଠେ ଶନୌ ସଗୁଳିକେ ରବ୍ୟାହିଫଣିବୀକ୍ଷିତେ ।
ଶୁଭୈର୍ନ ଯୁକ୍ତେ ଦୃଷ୍ଟେ ବା ଶ୍ୱାସକାସକ୍ଷୟାଦିଯୁକ୍ ।

ରବିମଙ୍ଗଳରାହୁ ଦୃଷ୍ଟି କ୍ରମରେ ଶନିଗୁଳିକ ଷଷ୍ଠରେ । ଶୁଭଯୁକ୍ତ କିମ୍ବା ଦୃଷ୍ଟ ନୋହିଥିଲେ ଶ୍ୱାସ କ୍ଷୟକାସ ଧରେ ।

ଜଲରାଶିଗତେ ଚନ୍ଦ୍ରେ ଷଷ୍ଠେ ତଦ୍ଭବନାଧିପେ ।
ଜ୍ଞଲଗ୍ନସ୍ଥବଦା ଦୃଷ୍ଟେ ମୂତ୍ରକୃଚ୍ଛ୍ରାଦିକଂ ଭବେତ୍ ।

ଚନ୍ଦ୍ର ଜଳରାଶିଗତ ହୋଇଥିବ, ସେ ରାଶିପତି ଷଷ୍ଠରେ । ଜଳ ରାଶିଗତ ବୁଧର ଦୃଷ୍ଟିରେ ଥିଲେ ମୂତ୍ରକୃଚ୍ଛ୍ର କରେ ।

ଷଷ୍ଠେ ଚନ୍ଦ୍ରେ ଶନୌ ରନ୍ଧ୍ରେ ବ୍ୟୟେ ପାପେ ବିଲଗ୍ନପେ ।
ପାପାଂଶକସମାଯୁକ୍ତେ ପୀନସଂ ରୋଗମାଦିଶେତ୍ ।

ଚନ୍ଦ୍ରମା ଷଷ୍ଠରେ, ଶନି ଅଷ୍ଟମରେ, ପାପ ରହିଲେ ବ୍ୟୟରେ । ଲଗ୍ନପତି ପାପ ନବାଂଶେ ରହିଲେ ପୀଡ଼େ ପୀନସ ରୋଗରେ ।

ବଲହୀନେଽରିନାଥେ ବା ଲଗ୍ନସ୍ଥେ ବା ଧନସ୍ଥିତେ ।
ମୂର୍ଦ୍ଧାର୍ତ୍ତିର୍ମୁଖରୋଗୋ ବା ଗୁଲ୍ମବଦ୍ଧ୍ୟର୍ଶଗ୍ଲ ଭବେତ୍ ।

ଷଷ୍ଠପତି ହୀନବଳ ହୋଇଥିବ କୁଜ ରହିଲେ ଲଗ୍ନରେ । ମୁଣ୍ଡେ ମୁଖେ ବ୍ୟଥା ଗୁଳ୍ମ ବୃଦ୍ଧି ଅର୍ଶ ନାନାରୋଗ କରେ ।

ଷଷ୍ଠେଶ୍ୱରସ୍ଥିତାଂଶେଶେ ରବ୍ୟାଦୌ ସ୍ଥ ତଥା ଭବେତ୍ ।
ଫଳଂ ପୂର୍ବୋକ୍ତମପ୍ୟେବ କ୍ରମାତ୍ତସ୍ୟ ବିନିର୍ଦ୍ଦିଶେତ୍ ।

ଷଷ୍ଠେଶ୍ୱରସ୍ଥିତ ନବାଂଶ ଈଶ୍ୱର ରବି ଆଦି ଥିଲେ ହୋଇ । ପୂର୍ବପର ଫଳ କ୍ରମରେ କହିବ ସେହି ସେହି ରୋଗ ହୋଇ ।

ଶତ୍ରୁସ୍ଥାନାଧିପେ କେନ୍ଦ୍ରେ ପାପଗ୍ରହନିରୀକ୍ଷିତେ ।
ଷଷ୍ଠେ ବା ପାପଭାବସ୍ଥେଲ୍ୟେ ଶତ୍ରୁପୀଡ଼ାଂ ବିନିର୍ଦ୍ଦିଶେତ୍ ।

ଷଷ୍ଠପତି ପାପଦୃଷ୍ଟ ହୋଇ କେନ୍ଦ୍ରେ କେନ୍ଦ୍ରେ ନିବାସ କରଇ । କିମ୍ବା ବହୁପାପ ଷଷ୍ଠଗୃହେ ଥିଲେ ଶତ୍ରୁ ସର୍ବଦା ପୀଡ଼ଇ ।

ଲଗ୍ନେଶେ ଶତ୍ରୁରାଶିସ୍ଥେ ତଦୀଶେ ଲଗ୍ନରାଶିଗେ ।
ମନ୍ଦମାନ୍ଦ୍ୟଗୁସଂଯୁକ୍ତେ ଶତ୍ରୁପୀଡ଼ାଂ ବିନିର୍ଦ୍ଦିଶେତ୍ ।

ଲଗ୍ନେଶ ଷଷ୍ଠରେ ଷଷ୍ଠେଶ ଲଗ୍ନରେ ଥାଇ, ଶନି ପାପଯୁତ । ଗ୍ରସ୍ତମୁକ୍ତ ଅବା ହୋଇଲେ ଜଣକେ ଶତ୍ରୁ ପୀଡ଼ଇ ନିଶ୍ଚିତ ।

ପାପଗ୍ରହେଣ ସଂଦୃଷ୍ଟେ ବଲହୀନେଽରିନାୟକେ ।
ପାପାନ୍ତରଗତେ ବାପି ଶତ୍ରୁପୀଡ଼ାଂ ବିନିର୍ଦ୍ଦିଶେତ୍

ପାପମଧ୍ୟଗତ କିମ୍ବା ପାପଦୃଷ୍ଟ ଦୁର୍ବଳ ହୋଇ ଷଷ୍ଠେଶ । ଯହିଁ ତହିଁ ଥିଲେ ଜଣକେ ବହୁତ ଶତ୍ରୁ ପୀଡ଼ଇ ବିଶେଷ ।

ଶତ୍ରୁସ୍ଥାନାଧିପେ ଦୃଷ୍ଟେ ନୀଚମୂଢ଼ାରିସଂଯୁତେ ।
ଲଗ୍ନେଶେ ବଲସଂଯୁକ୍ତେ ଶତ୍ରୁନାଶଂ ବଦେଦ୍ବୁଧଃ ।

ନୀଚରେ, ଶତ୍ରୁଗୃହରେ, ବା ଅଶୁଭଭବନେ ବା ଅସ୍ତରେ । ଥିଲେ ଷଷ୍ଠପତି ବଳୀ ଲଗ୍ନପତି ହେଲେ, ଶତ୍ରୁ ହୁଅନ୍ତି ନଷ୍ଟ ।

ଶୁଭଗ୍ରହେଣ ସଂଦୃଷ୍ଟେ ଶତ୍ରୁସ୍ଥାନାଧିପେ ଯଦା ।
ଶୁଭଯୁକ୍ତେ ଶୁଭକ୍ଷେତ୍ରେ ତେନ ମୈତ୍ରୀଂ ବଦେଦ୍ବୁଧଃ ॥

ଶୁଭ ଦୃଷ୍ଟିଗତ ଅବା ଶୁଭଯୁକ୍ତ କିମ୍ବା ଶୁଭ ଭବନରେ । ଥିଲେ ଷଷ୍ଠପତି ଶତ୍ରୁସଙ୍ଗେ ମୈତ୍ରୀ ଜନମାଏ ମହତରେ ।

ଲଗ୍ନେଶାଦ୍ବଲହୀନେ ତୁ ଶତ୍ରୁସ୍ଥାନାଧିପେ ଯଦା ।
ଶୁଭଯୁକ୍ତେ ଶୁଭୈର୍ଦୃଷ୍ଟେ ଶତ୍ରୁଣାଂ ମୈତ୍ରୀମାଦିଶେତ୍ ।

ଲଗ୍ନପତିଠାରୁ ହୋଇ ବଳହୀନ ଶୁଭଯୁତ ଅବା ଦୃଷ୍ଟ । ହେଲେ ଷଷ୍ଠପତି, ନିଶ୍ଚୟ ଜାଣିବ ଶତ୍ରୁ ହୁଅଇ ତା ମିତ୍ର ।

ଲଗ୍ନେଶେଽଷ୍ଟମଭାବସ୍ଥେ ଷଷ୍ଠେଶେନ ନିରୀକ୍ଷିତେ ।
ତୌ ବା ବିଲଗ୍ନଭାବସ୍ଥୌ ଜ୍ଞାତିପୀଡ଼ାଂ ବିନିର୍ଦ୍ଦିଶେତ୍ ।

ଷଷ୍ଠପତି ଦୃଷ୍ଟ ହୋଇ ଲଗ୍ନପତି ଅଷ୍ଟମେ ଯେବେ ରହଇ । କିମ୍ବା ଷଷ୍ଠେଶ ଲଗ୍ନେଶ ଦୁହେଁ ଲଗ୍ନେ ଥିଲେ ସ୍ୱଜ୍ଞାତି ପୀଡ଼ଇ ।

ଭବଶତ୍ରୁପୌ ବିଲଗ୍ନସ୍ଥୌ ଷଷ୍ଠଭାବେଶ୍ୱରାନ୍ବିତୌ ।
ଶନ୍ୟାରଫଣିସଂଦୃଷ୍ଟୌ ଜ୍ଞାତିପୀଡ଼ାଂ ବିନିର୍ଦ୍ଦିଶେତ୍ ।

ଷଷ୍ଠପତିସଙ୍ଗେ ଭବ ଶତ୍ରୁ ଦୁହେଁ ଲଗ୍ନଠାରେ ଥିଲେ ବହୁ । ଶନି କୁଜ କିମ୍ବା ରାହୁ ଦେଖୁଥିଲେ ଜ୍ଞାତି-ପୀଡ଼ା ସେ ଲଭଇ ।

ଲଗ୍ନାଧିପେ ଶୁଭଯୁତେ ଷଷ୍ଠେ ଚନ୍ଦ୍ରେଽଥବା ଶୁଭେ ।
କେନ୍ଦ୍ରତ୍ରିକୋଣଗେ ସୌମ୍ୟେ ଜ୍ଞାତିଭିଃ ସହ ଜୀବନଂ ।

ଲଗ୍ନପତି ଶୁଭଯୁକ୍ତ ହୋଇଥିବ, ଷଷ୍ଠରେ ଚନ୍ଦ୍ର ବା ଶୁଭ । ଗୁରୁ ଭୃଗୁ ଥିଲେ କେନ୍ଦ୍ରେ ବା ତ୍ରିକୋଣେ ବୁଧ ଯଦ୍ୟପି ରହିବ । ଏ ଯୋଗରେ ଜାତ ହୋଇଲେ ଜ୍ଞାତିଙ୍କ ସଙ୍ଗେ ସୁଖରେ ବଞ୍ଚିବ ।

ଜ୍ଞାତୟୋ ବହବଃ ପୁତ୍ର ଷଷ୍ଠେଶେ ଦେବପୂଜିତେ ।
ଶୁଭଗ୍ରହ୍ୟୁତେ ଶୁଭୈର୍ଯୁକ୍ତେ ମୃଦ୍ୱଂଶାଦିସମନ୍ୱିତେ ।

ଗୁରୁ ଷଷ୍ଠପତି ହୋଇ ଶୁଭଗୃହେ କିମ୍ବା ଶୁଭଯୁକ୍ତ ଥିଲେ । ମୃଦୁଅଂଶାଦିରେ ଅଥବା ରହିଲେ, ତେବେ ବହୁଜ୍ଞାତି ହୁଅନ୍ତି ।

ଜ୍ଞାତିକ୍ଷୟଂ ବଦାମ୍ୟାହ ଷଷ୍ଠେଶେ ପାପସଂଯୁତେ ।
କ୍ରୂରାଂଶେ ନୀଚମୂଢାଦୌ ଶୁଭଦୃଗ୍ୟୋଗବର୍ଜିତେ ।

ଅସ୍ତଗତ ହେଲେ, ପାପଯୁକ୍ତ ଥିଲେ, ନୀଚେ ବା କ୍ରୂର ଅଂଶରେ ଥିଲେ ଷଷ୍ଠପତି, ନଥିଲେ ବା ଶୁଭ ସଙ୍ଗେ ବା ଶୁଭ ଦୃଷ୍ଟିରେ । ଜ୍ଞାତିର ବିନାଶ ଜାଣିବ ତାହାର ଯେ ଜନ୍ମ ଏହି ଯୋଗରେ ।

ପାରାବତାଦିଭାଗସ୍ଥେ ଲଗ୍ନେଶେ ଶୁଭବୀକ୍ଷିତେ ।
ଜ୍ଞାତୀଶେ ବଳହୀନେ ବା ତସ୍ମାଦୁତ୍କର୍ଷତାଂ ବ୍ରଜେତ୍ ।

ଶୁଭଦୃଷ୍ଟିଠାରେ ପାରାବତାଦିରେ ରହିଲେ ଲଗ୍ନେଶ୍ୱର । ଚତୁର୍ଥାଧିପତି ବଳହୀନ ହେଲେ ଉତ୍କୃଷ୍ଟ ଜ୍ଞାତି ମଧ୍ୟର ।

ଭ୍ରାତ୍ୟେଶେ ଷଷ୍ଠରାଶିସ୍ଥେ ଷଷ୍ଠେଶେନ ନିରୀକ୍ଷିତେ ।
ଷଷ୍ଠେଶେ ମନ୍ଦଭୌମାଭ୍ୟାଂ ଯୁତେ ଚୌରାଗ୍ନିପୀଡନମ୍ ॥

ଷଷ୍ଠେଶଦୃଷ୍ଟିରେ ଭ୍ରାତୃେଶ ଷଷ୍ଠରେ ଥାଇ, ଶନିକୁଜସଙ୍ଗେ ଥିଲେ ଷଷ୍ଠପତି, ଚୌର ଅଗ୍ନିପୀଡ଼ା ଜନ୍ମେ ଘଟଇ ତା ଯୋଗେ ।

ତଦୀଶେ ଗୋପୁରାଂଶାଦୌ ଧବସେଶେନ ବୀକ୍ଷିତେ ।
ଲଗ୍ନେଶେ ବଳସମ୍ପନ୍ନେ ଜ୍ଞାତୀନାମୁପକାରକୃତ୍ ॥

ଧବର ଦୃଷ୍ଟିରେ ଗୋପୁରାଂଶାଦିରେ ଷଷ୍ଠପତି ଯେବେ ଥାଏ । ଲଗ୍ନପତି ବଳବନ୍ତ ହୋଇଥିଲେ ଜ୍ଞାତି ଉପକାରୀ ହୁଏ ।

ଷଷ୍ଠେ ସୌମ୍ୟେ ଶୁଭୈର୍ଯୁକ୍ତେ ତଦୀଶେ ଶୁଭସଂଯୁତେ ।
ପାପଗ୍ରହାଣାଂ ମଧ୍ୟସ୍ଥେ ସ୍ୱଦାଂଶପ୍ରିୟୋ ଭବେତ୍ ॥

ଶୁଭଯୁତ ବୁଧ ଷଷ୍ଠରେ ରହିଲେ, ଶୁଭସଙ୍ଗେ ଷଷ୍ଠପତି । ପାପଗ୍ରହଦ୍ୱୟ ମଧ୍ୟରେ ରହିଲେ ଯାଗ ପ୍ରିୟ ସେ ଭବନ୍ତି ।

ଭଗଦାଂଶପ୍ରିୟୋ ନିତ୍ୟଂ ଷଷ୍ଠେ ଜୀବେ ଶଶାଙ୍କଜେ,
ତୟୋଃ କ୍ଷେତ୍ରେ ତଦୀଶେ ବା ମୃଦ୍ୱଂଶାଦିସମନ୍ୱିତେ ॥

ବୁଧ କିମ୍ବା ଗୁରୁ ରହିଲେ ଷଷ୍ଠରେ, ବୁଧଗୁରୁଙ୍କ କ୍ଷେତ୍ରରେ, । ମୃଦୁଅଂଶାଦିରେ ଷଷ୍ଠେଶ ରହିଲେ ଯାଗପ୍ରିୟ ହୁଅନ୍ତି ନରେ ।

ଦେବେଜ୍ୟେ ଷଷ୍ଠଭବେଶେ ଶୁକ୍ରେ ବା ତସ୍ୟ ନାୟକେ ।
ମଧୁରାଦପ୍ରିୟୋ ଜାତ୍ୟଂ ଚେ ଦୃଷ୍ଟ୍ୟଦ୍ୟଂଶକାନ୍ୱିତେ ।

ଶୁକ୍ର କିମ୍ବା ଗୁରୁ ଷଷ୍ଠପତି ହୋଇ ଚୋଥୁରାଦିଅଂଶେ ଥିଲେ, । ମିଷ୍ଟରସପ୍ରିୟ ହୁଅଇ ମାନବ ଏମନ୍ତ ଯୋଗେ ଜନ୍ମିଲେ ॥

ଶୁକ୍ରେ ଷଷ୍ଠେ ସଚୌମ୍ୟେ ବା ଶୁଭଦୃଷ୍ଟେ ଶୁଭାଂଶକେ ।
ବଲାନ୍ୱିତେ ଶୁଭାଂଶସ୍ଥେ ଜାତ୍ୟଂ ମଧୁରଭୁକ୍ ଭବେତ୍ ॥

ବୁଧ ସଙ୍ଗତରେ ଅଥବା ଷଷ୍ଠରେ ଶୁକ୍ର ବଳିଷ୍ଠ ହୋଇଣ । ଶୁଭଦୃଷ୍ଟି ପାରେ ବା ଶୁଭ ଅଂଶରେ ଥିଲେ, ମିଷ୍ଟପ୍ରିୟ ଜନ ।

ପାପଗ୍ରହେଣ ସଂଦୃଷ୍ଟେ ବୁଧେ ମଧୁରବର୍ଜିତଂ ।
ବୁଧେନ ଯୁକ୍ତେ ଶୁକ୍ରେଽପି ଅମ୍ଳଭୁକ୍ ସ ନରୋ ଭବେତ୍ ।

ବୁଧ ପାପଗ୍ରହ ଦୃଷ୍ଟିରେ ରହିଲେ ମଧୁର ନ ଖାଏ ନର, । ବୁଧଯୁକ୍ତ ଶୁକ୍ର ଷଷ୍ଠରେ ରହିଲେ ଅମ୍ଳ ପ୍ରିୟ ହୁଏ ତାର ।

ଷଷ୍ଠେ ଶୁକ୍ରେ ଭୌମଦୃଷ୍ଟେ ଭୌମେ ଶୁକ୍ରସମନ୍ୱିତେ ।
ତବସେଶେନ ବା ଦୃଷ୍ଟେ ଅମ୍ଳଭୁକ୍ ସ ନରୋ ଭବେତ୍ ।

ଷଷ୍ଠେ ଶୁକ୍ର ଥାଇ ଭୌମଦୃଷ୍ଟ ହେଲେ ଅବା କୁଜଶୁକ୍ର ଦୁହେଁ, । ରବିଦୃଷ୍ଟ ହୋଇ ଷଷ୍ଠରେ ରହିଲେ ଅମ୍ଳପ୍ରିୟ ସେ କହଇ ।

ଷଷ୍ଠେଶେ ଭୌମସଂଦୃଷ୍ଟେ ରାହୁକେତୁନିରୀକ୍ଷିତେ ।
ଭୌମକ୍ଷେତ୍ରଗତେ ବାପି ଅପ୍ରଲମ୍ବୀ ଦଗ୍ଧୋର୍ଯ୍ୟସ୍ତନ୍ ।

କୁଜ ରାହୁ କିମ୍ବା କେତୁର ଦୃଷ୍ଟିରେ ଷଷ୍ଠେଶ ଦେବେ ରହଇ । କୁଜଗୃହେ ଅବା ଷଷ୍ଠେଶ ରହିଲେ ବବଦୁଁ ବଦ୍ୟା ଖାଇ ।

ପୂର୍ବାଦୀନାଦିଦଂ ଯୋଜ୍ୟମୁଦ୍ଭାବେଶଭାଗକୈଃ ।
ନାସ୍ତିକାୟ ନ ବକ୍ତବ୍ୟଂ ବକ୍ତବ୍ୟଂ ସୁଜନାୟ ବୈ ।

ପୂର୍ବାଦଶ୍ୱବଲୁ ବିଚାର କରିବ ଏହିସବୁ ସବୁଯୋଗ । ଦୁଷ୍ଟଲୋକଙ୍କୁ ଏହା ନ ଶିଖାଇବ ସୁଜନଙ୍କୁ ଶିଖାଇବ ।

ଇତିଶ୍ରୀ ସର୍ବାର୍ଥଚିନ୍ତାମଣୌ ପଞ୍ଚମୋଽଧ୍ୟାୟଃ ।
ଯଦାଦ୍ୟୁତ୍ପୂର୍ବବଂଶ୍ୟାନାଂ ପ୍ରୀତ୍ୟୈ ଭୂଭୁକ୍କଲାଧିପଃ ।
ତେନ ଭାଷ କୃତା ସ୍ପଷ୍ଟା ପଦ୍ୟେନୈବ ପରୀକ୍ଷିତା ॥

---

ଷଷ୍ଠୋଽଧ୍ୟାୟଃ, ସପ୍ତମଭାବଫଳବର୍ଣ୍ଣନଂ ।

ଶୁକ୍ରେ କଳତ୍ରେ ଉଚ୍ଚଗ ମୂଳଃ ସ୍ୟାଦ୍ବୃଦ୍ଧୋଽନ୍ୟଯୋଷାନିରତୋ ଗରୌ ତୁ ।
ସ୍ୱଦାରସକ୍ତୋ ଜନନାଥଯନେ କୁଦାରକମ୍ଯଃ ସୁପତୌ ସୁଦାରଃ ।

ଶୁକ୍ର ସପ୍ତମରେ ଥିଲେ କାମାତୁର ହୋଇ । ବୁଧଥିଲେ ଯବନାଶ ଭଜଣ କରଇ । ଗୁରୁଯୋଗେ ଧନନାଶହନ୍ତି, ଶନି ଥିଲେ । କୁଟୀର ରତ, ସୁନାଶ ସ୍ୱାମୀ ସୁଖ ଦେଲେ ।

ଭୃଗେ ବନ୍ଧୁସ୍ତ୍ରୀସ୍ୱରତଃ କୁଳଘ୍ନୋ ଜ୍ଞନୌ କୁଟମ୍ବୀ ବନ୍ଧୁଦାରସକ୍ତଃ ।
ଲଗ୍ନସ୍ଥିତା କଉଳନାଶଚନ୍ଦ୍ରନାଥାଃ ସଶୁକ୍ରା ଯଦି ମାସଯୁକ୍ତାଃ ।
ଜାତଃ ପରସ୍ତ୍ରୀଷୁ ରତଃ କୁମାର୍ଗୀ ଶୁକ୍ରେକ୍ଷିତସ୍ତେନ ତଥାବିଧଂ ଚ ।

ଭୃଗୁଯୋଗେ ବନ୍ଧୁନାଶଥାଇ କୁଳହୀନ । ଭଉଥିଲେ ବନ୍ଧୁନାଶ କୁଟୁମ୍ବ ସମ୍ପୂର୍ଣ୍ଣ ଧନ,ଜାୟା, ଚନ୍ଦ୍ରନାଥମାନେ ଶୁକ୍ରସଙ୍ଗେ । କିମ୍ବା ପାପଯୁତହୋଇଥିଲେ ଲଗ୍ନରେ ଏଯୋଗେ ଜନ୍ମିବା ନର ପରନାରୀରତ । କୁମାର୍ଗ, ଶୁଭଦୃଷ୍ଟି ଥିଲେ ନୁହେ ସତ

ଲଗ୍ନାରଗୌ ପାପଯୁତୌ ଯଦି ସ୍ୟାଜ୍ଜାତଃ ପରସ୍ତ୍ରୀଷୁ ରତଃ କୁମାର୍ଗୀ ।

ଲଗ୍ନ,ଷଷ୍ଠପତି ଦୁହେଁ ହେଲେ ପାପଯୁକ୍ତ । କୁମାର୍ଗ ହୁଏ ନର ପରନାରୀରତ

ଲଗ୍ନେଶ୍ୱରେ ଶନି କୁଟୁମ୍ବନାଥେ ପାପୈର୍ଯୁତେ ବା ଯଦି ଦାରସଂସ୍ଥୌ
ଚେତ୍ତୌ ସପାପେ ଯଦି ଦାରନାଥେ ଜାତଃ ପରସ୍ତ୍ରୀଷୁ ରତଃ କୁଟୁମ୍ବେ ।

ଲଗ୍ନେଶ ବା ଷଷ୍ଠପତି କିମ୍ବା ଦ୍ୱିତୀୟେଶ । ପାପସଙ୍ଗେ ଯେବେ ଭଲେ ସପ୍ତମରେ ବାସ । ଶନି ଜାୟାପତି ହୋଇ ଥିଲେ ପାପସଙ୍ଗେ । ପରନାରୀରତ ହୁଏ ଜନ୍ମିଲେ ଏ ଯୋଗେ ।

ସଗ୍ରହକେନ୍ଦ୍ରେ ଯଦି ଦାରନାଥେ ପାପେକ୍ଷିତେ ବା ବ୍ୟଭିଚାରଯୋଗଃ ।
ଚର୍ମେଶବନ୍ଧେଶକଳତ୍ରନାଥାଃ ମନ୍ଦସ୍ଥିତା ଜାରମୁଦାହରନ୍ତି ॥

ଦାରନାଥ ରାହୁ କିମ୍ବା କେତୁ ସଙ୍ଗେଥାଇ । ପାପଦୃଷ୍ଟିରେ ରହିଲେ ବିଚ ଅଟେ ସେହି । ଚର୍ମପତି ଧନପତି କଳତ୍ର ନାଥକ । ଦଶମ ରହିଲେ ଜାର ହୁଅଇ ସେ ଲୋକ ।

ଏକୋ ଗ୍ରହସ୍ତସ୍ୟ ଚତୁର୍ଥସଂସ୍ଥୋ ଜାତଃ ପରସ୍ତ୍ରୀଗମନଂ କରୋତି ।
ପୁତ୍ରେଶ୍ୱରେ ଦାରପତୌ ବଳାଢ୍ୟେ ଦୃଷ୍ଟେ ଯୁତେ ବା ଗୁରୁଣାଯୁତେନ ।
ଜାତୋ ଜନପତ୍ୟା ଯଦି ନକୁଳବୈଜ ଗତ୍ସୁତଃ ସ୍ୟାତ୍ ଶୁଭଗ୍ରହଦୃଷ୍ଟେ ।

ଚର୍ମେଶ ଧନେଶ କିମ୍ବା ସପ୍ତମଈଶ୍ୱର । ଏକଇ ଚତୁର୍ଥେ ଥିଲେ ସେ ପୁରୁଷ ଜାର । ସୁତପତି ଜାୟାପତି ଦୁହେଁ ବଳବନ୍ତ । ହୋଇ ଷଷ୍ଠପତି ଦୃଷ୍ଟି ପରେ ହେଲେ ଯୁକ୍ତ । ଅପକିଞ୍ଚ ହୁଏ ନର, ଶୁଭଦୃଷ୍ଟି ଥିଲେ । ଜାର ପୁରୁଷତା ନାଶ ସୁତ ଜନ୍ମରେ ।

ଦାରେଶ୍ୱରେ ପାପଯୁତେ କୁଟୁମ୍ବେ ଭୌମେନ ଦୃଷ୍ଟେ ଯଦି ଜାରଯୁକ୍ତଃ

ଜାୟାପତି ଦ୍ୱିତୀୟରେ ମଙ୍ଗଳଦୃଷ୍ଟିରେ । ପାପସଙ୍ଗେ ଥିଲେ ନାଶ ଜାରୁଁ ସୁଖ ଭଜେ ।

ଧୀଧର୍ମନାଥୌ ସକଳଙ୍କନାଥୌ ଦୁଃସ୍ଥାନଗୌ ହୀନବଲୌ ଶୁଭୈର୍ନ
ଦୃଷ୍ଟୌ ସୁତେ ଦାରବନ୍ଧ୍ୟତ୍ୱଯୋଗେ ଶୁପୁତ୍ରଯୋଗଂ ମୁନୟୋ ବଦନ୍ତି ॥

ପଞ୍ଚମେଶ ନବମେଶ ଜାଣ୍ୟାମୃତ ସଙ୍ଗ । ଦୁର୍ବଳ ହୋଇଥିଲେ ଅଶୁଭଗ୍ରହଙ୍କଯୋଗେ । ଏଯୋଗରେ ବନ୍ଧ୍ୟାନାରୀ ହୁଅଇ ଜାଣିବ । ପଞ୍ଚମରେ ଶୁଭଦୃଷ୍ଟି ନଥିଲେ ଅପୁତ୍ର ।

କ୍ଷୀଣେ ଶଶାଙ୍କେ ଯଦି ପାପଯୁକ୍ତେ ଦାରସ୍ଥିତେ ତୁ ବ୍ୟଭିଚାରଗାମୀ ।
ଲଗ୍ନେ ସପାପେ ଯଦି ଦାରନାଥେ ଜାତଃ ପରସ୍ତ୍ରୀପୁରତଃ କୁମାର୍ଗୀ ।

ପାପଯୁକ୍ତ କ୍ଷୀଣଶଶୀ ଥିବେ ସପ୍ତମରେ । ଏଯୋଗେ ଜାତ ରମଇ ଅନ୍ୟନାରୀଠାରେ । ସପ୍ତମେଶ ପାପଙ୍କ ସଙ୍ଗେ ଥିଲେ ଲଗ୍ନଘରେ । ଏଯୋଗେ କୁମାର୍ଗଗାମୀ ରମେ ପରସ୍ତ୍ରୀରେ ।

ସୁତେଶେ ଦାରଗଂ ପାପେ ତଦୀଶେ ପାପସଂଯୁତେ ।
ଶୁକ୍ରୋ ବଳବିହୀନଶ୍ଚେଦ୍ଦୁର୍ବଳେଣ ସ୍ତ୍ରୀମୃତିର୍ଭବେତ୍ ॥

ପଞ୍ଚମେଶ ସପ୍ତମରେ ସପ୍ତମେଶ୍ୱର । ପାପଙ୍କ ସଙ୍ଗେ ଯହିଁ କହିଁ ରହିଲେ ଏକତ୍ର । ଶୁକ୍ର ହୋଇଲେ ବଳହୀନ ଏଯୋଗେ ସେ ଜାତ । ଗର୍ଭବତୀ ତାର ନାରୀ ମରଇ ଅପୁତ୍ର ।

ନୀଚେ ଭୃଗୌ ବା ଯଦି ବା ଶଶାଙ୍କେ ନୀଚସ୍ଥିତେ ଯଦି ମୃତ ଦାରନାଥଃ
ତଦ୍ଦୁଃଖନାଥ ତନ୍ମରଣଂ ବଦନ୍ତି ଦ୍ରେକ୍କାଣକେ ପାଶଭୁଜଙ୍ଗମାଖ୍ୟେ ॥

ଶୁକ୍ର କିମ୍ବା ଚନ୍ଦ୍ର ଯେବେ ନୀଚରେ ରହନ୍ତି । ପୂର୍ବଯୋଗ ଥିଲେ ନାରୀ କ୍ଲେଶେ ମରଇ । ଦାରପତି ପାଶ କିମ୍ବା ଭୁଜଙ୍ଗ ଦ୍ରେକ୍କାଣେ । ଥିଲେ ଦଉଡ଼ି ଦେଇଣ ନାରୀ ମରେ ପ୍ରାଣେ ।

ଦ୍ରେକ୍କାଣଭାଗେ ବିଷଭକ୍ଷଣାଦ୍ୱା ମାନ୍ଦ୍ୟର୍କ୍ଷଯୁତେ ଦାରପତୌ ସପାପୌ ।
ସ୍ଥିତୌ କୁଟୁମ୍ବାଧିପତୌ କଳତ୍ରନାଥେ ଯଦା ତ୍ରୈକଳତ୍ରଭାକ୍ ସ୍ୟାତ୍ ॥

ମାନ୍ଦି ରାହୁ କିମ୍ବା କେତୁଙ୍କ ସଙ୍ଗ ସପ୍ତମେଶ । ଭୁଜଙ୍ଗ ଦ୍ରେକ୍କାଣେ ଥିଲେ ବିଷେ ନାରୀ ନାଶ । ଦ୍ୱିତୀୟେଶ ସପ୍ତମେଶ ଦୁହେଁ ନିଜଘରେ । ଥିଲେ ଜାତକର ଏକନାରୀ ନଷ୍ଟେ କରେ ।

ତାଭ୍ୟାଂ ସମେତୈର୍ଗ୍ରହନ୍ୟୂନଖେଟୈର୍ବା କଳତ୍ରସଂଖ୍ୟା ପ୍ରବଦନ୍ତି ସନ୍ତଃ ।
ବିଲଗ୍ନନାଥସ୍ଥିତରାଶିନାଥସଂଯୁକ୍ତଖେଟୈରପି ବାଚ୍ୟମେତତ୍ ॥

ଦ୍ୱିତୀୟେଶ ସପ୍ତମେଶ ସଙ୍ଗେ ଯେତେ ଗ୍ରହ । ସେହି ପରିମାଣେ ନାରୀସଂଖ୍ୟା ତାର କହ । କିମ୍ବା ସପ୍ତମେଶ ଯୁକ୍ତରାଶିର ଈଶ୍ୱର ସଙ୍ଗେ ଯେତେ ଗ୍ରହ ତେତେ ନାରୀ ଜାତକର ।

କଳତ୍ରେଶେ ବହୁସ୍ୱର୍ଣେ ଶୁଭବନ୍ଧାଦ୍ଦେହଭୃତଃ ।
ବହୁଭାର୍ଯ୍ୟାଂ ନରଂ ବିନ୍ଦ୍ୟାଦୁଚ୍ଚସ୍ୱର୍କ୍ଷଗତେଽପି ବା ॥

ସ୍ତ୍ରୀ ଘରଅଧିପ ବହୁଗୁଣଯୁକ୍ତ ହେଲେ । କଳତ୍ରାଧିପତି ଅବା ଲଗ୍ନରେ ଉଚ୍ଚହେଲେ । ବହୁଭାର୍ଯ୍ୟା ଲଭେ ନର ଏ ଯୋଗେ ଜନ୍ମିଲେ ।

ଭାର୍ଯ୍ୟାତ୍ରୟଂ ଭବେତ୍ ତସ୍ୟ ଲଗ୍ନେଶେ ନାଶରାଶିଗେ ।
କଳତ୍ରେ ପାପସଂଯୁକ୍ତେ କୁଟୁମ୍ବେ ଚ ତଥାବିଧେ ॥

ସପ୍ତମେଶ ଦ୍ୱିତୀୟେଶ ସଙ୍ଗେ ପାପ ଥିବ । ଲଗ୍ନେଶ ବ୍ୟୟରେ ଥିଲେ ତିନିସ୍ତ୍ରୀ କରିବ ॥

ଶନ୍ୟାରଫଣିସଂଯୁକ୍ତଃ କଳତ୍ରେଶୋ ଯଦା ଭବେତ୍ ।
କ୍ରୂରଷଷ୍ଟ୍ୟଂଶକେ ବାପି କଳତ୍ରମରଣଂ ବଦେତ୍ ।

ଶନିମଙ୍ଗଳରାହୁରେ ଯୁକ୍ତ ଜାୟାପତି । କ୍ରୂରଷଷ୍ଟିଅଂଶେ ଥିଲେ କଳତ୍ର ନାଶନ୍ତି

ଶୁଭଗ୍ରହେଣ ସଂଯୁକ୍ତଃ କଳତ୍ରେଶୋଽରିନୀଚଗଃ ।
ପାପେ କଳତ୍ରରାଶିସ୍ଥେ ଦାରାହଦ୍ୱୟମାଦିଶେତ୍ ॥

ଶୁଭଯୁକ୍ତ ସପ୍ତମେଶ ନୀଚେ, ଶତ୍ରୁଘରେ । ସପ୍ତମେ ପାପଥିଲେ ଦୁଇଭାର୍ଯ୍ୟା କରେ

କଳତ୍ରେଶେ ପାପଯୁକ୍ତେ ନୀଚଶତ୍ରୁଂଶକେଽପି ବା ।
ପାପଗ୍ରହେଣ ସଂଦୃଷ୍ଟେ ଦାରଦ୍ୱୟମାଦିଶେତ୍ ॥ *

ପାପଯୁକ୍ତ କମ୍ବା ଦୃଷ୍ଟ କଳତ୍ର ଈଶ୍ୱର । ନୀଚଶତ୍ରୁଅଂଶେ ଥିଲେ ଦୁଇଭାର୍ଯ୍ୟା ତାର ।

କଳତ୍ରକାରକଶ୍ଚନ୍ଦ୍ରୋ ଜ୍ଞୋ ଗୁରୁର୍ବାଥବା ଭୃଗୁଃ ।
ମଧ୍ୟେ ବଲିଷ୍ଠୋ ଯସ୍ତେଷାଂ ତସ୍ମାତ୍ ସର୍ବଂ ନିରୂପୟେତ୍ ।

ଜାୟାକାରକ ବା ଚନ୍ଦ୍ର ବା ବୁଧ ବା ଗୁରୁ । ଅବା ଶୁକ୍ର ଏମାନଙ୍କ ମଧ୍ୟେ ବଳଠାରୁ । ଜାୟାଭାବଫଳ ସବୁ ବିଚାର କରନ୍ତୁ ॥

କଳତ୍ରେ ବା କୁଟୁମ୍ବେ ବା ପାପଦୃଗ୍ଯୋଗସମ୍ଭବେ ।
ତଦୀଶେ ବଳହୀନେ ତୁ କଳତ୍ରାନ୍ତରମାପ୍ନୁୟାତ୍ ।

ସପ୍ତମେ ବା ଦ୍ୱିତୀୟରେ ପାପଦୃଷ୍ଟି ଥିବ । ଅବା ପାପ ସେହିଠାରେ ବାସ କରିଥିବ । ସେ ସ୍ଥାନେଶ ହୋଇବ ଯୋଗ ଜାୟାପତି ଦୁର୍ବଳେ । ଦୁଇ କଳତ୍ରସଙ୍ଗିନୀ ମାନବ ଲଭିଲେ ॥

---

* ଏହି ଶ୍ଳୋକଟିରେ ବହୁ ପାଠଭେଦ ହୁଏ । କଳତ୍ରେ ପାପସଂଯୁକ୍ତେ ନୀଚଶତ୍ରୁଂଶକେଽପି ବା, ଇତି କେଚିତ୍ । କିନ୍ତୁ ଏରୂପପାଠ ଅସମ୍ଭବ । କାରଣ ରାଶିର ନୀଚାଦି ନାହିଁ । କଳତ୍ରେଶେ ଯଦି ଆହରଣ କରାଯାଏ ତେବେ ପାଠର ଅର୍ଥଭେଦ ଘଟୁଅଛି, ଏଣୁ ପ୍ରଥମ ହିଁ ପକ୍ଷ ସାଧୁ ମନେହୁଏ ॥

ସପ୍ତମେ ଗୃହ୍ଣମେ ପାପେ ବ୍ୟୟେ ଭୂସୂନୁସଂଯୁତେ ॥
ଅଦୃଶ୍ୟେ ଚନ୍ଦ୍ର ନାଥେନ କଳତ୍ରାନ୍ତରଙ୍ଗୁଶ୍ଚବେତ୍ ।

ସପ୍ତମରେ ଅଷ୍ଟମରେ ପାପଗ୍ରହ ଥିବ । ସପ୍ତମାଧିପତି ସପ୍ତମକୁ ନ ଦେଖିବ । ଦ୍ୱାଦଶରେ ଶୁକ୍ର ଯେବେ କରିଥାଏ ବାସ । ଦ୍ୱିତୀୟ କଳତ୍ର କରେ କହଇ ଜ୍ୟୋତିଷ ।

ଷଷ୍ଠେ ଚ ସପ୍ତମସ୍ଥେ ଭୃଗୁ କଳତ୍ରେ ବା ତଥାବଧେ ।
ତଦୀଶେ ପାପସଂଦୃଷ୍ଟେ କଳତ୍ରଦ୍ୱୟମ୍ବେତ୍ ।

ଧନେ କିମ୍ବା ସପ୍ତମରେ ଚନ୍ଦ୍ରପାପ ଥିଲେ । ସପ୍ତମାଧିପଙ୍କୁ ପାପଗ୍ରହ ଦେଖୁଥିବେ । ଏ ଯୋଗେ ଦୁଇ କାନ୍ତ ନିଶ୍ଚୟ କରିବେ ॥

ଲଗ୍ନେ କୁଟୁମ୍ବେ ଦାରେ ବା ପାପଖେଚରସଂଯୁତେ ।
ଦାରେଶେ ନୀଚମୂଢ଼ାଦୌ କଳତ୍ରଦ୍ୱୟମ୍ବେତ୍ ॥

ଲଗ୍ନରେ ବା ଦ୍ୱିତୀୟରେ କିମ୍ବା ସପ୍ତମରେ । ବାସ କରିଥାନ୍ତି ଯେବେ ଅଶୁଭ ଖେଚରେ । ସପ୍ତମେଶ ନୀଚ କିମ୍ବା ହେଲେ ଅସ୍ତଗତ । ଦ୍ୱିତୀୟ ଭୋଗକରେ ମାନବ ଏ ସତ୍ୟ ।

ନୀଚମୂଢ଼ାରିଭବସ୍ଥେ ଲଗ୍ନେଶେ ଦାରପେଽଥବା ।
ଷଡ଼ଷ୍ଟାଂଶକେ ବାପି କଳତ୍ରାନ୍ତରଭାଗଭବେତ୍ ॥

ଅସ୍ତଗତ କିମ୍ବା ନୀଚ ଅବା ଶତ୍ରୁଗୃହୀ । ଲଗ୍ନେଶ ବା ସପ୍ତମେଶ ଯେବେଥାଏ ହୋଇ । ଷଡ଼ଷ୍ଟି ଅଂଶେ ଅବା ଯେବେ ଥାଏ ରହି । ଦ୍ୱିତୀୟ କଳତ୍ର ନିଶ୍ଚୟ ସେ ଭୋଗ କରଇ ।

ଦାରେଶସ୍ଥନବାଂଶେଶେ ନୀଚମୂଢ଼ ରିପ୍ୱଂଶକେ ।
ପାପାନ୍ତରେ ପାପଦୃଷ୍ଟେ କଳତ୍ରାନ୍ତରଭାଗ୍ଭବେତ୍ ॥

ଦାରେଶଥିବା ନବାଂଶପତି ନୀଚରେ ଥିଲେ । ପାପମଧ୍ୟେ କିମ୍ବା ପାପଦୃଷ୍ଟିରେ ରହିଲେ । ଅସ୍ତଗତ ଅବା ଶତ୍ରୁ ରାଶିଅଂଶେ ଥିଲେ । ଦୁଇନାରୀ କରେ ଏହା ଜ୍ୟୋତିଷରେ ବୋଲେ ।

ଏବଂ କୁଟୁମ୍ବନାଥେନ କାରକସ୍ଥାଂଶପେନ ବା ।
ପାପାନ୍ତରେ ଦାରସ୍ଥେ ତନ୍ନାଥେଽପି କଳତ୍ରହା ।

କାରକ ବା ଦ୍ୱିତୀୟେଶ ଥିବା ନବାଂଶକୁ । ପୂର୍ବସହ ଯୋଗ କରିବ ବୁଝିବୁ । ଜାୟାନାଥ କିମ୍ବା ସେହି ପାପମଧ୍ୟେ ଥିଲେ । କଳତ୍ର ବିନାଶ କରେ ଶାସ୍ତ୍ରକାର ବୋଲେ ।

ଲଗ୍ନେଶସ୍ୟ ଦ୍ୱିଧର୍ମସ୍ଥେ ସୋମପୁତ୍ରେ ବଳାନ୍ୱିତେ ।
ଦାରେଶାଦ୍ୱି ଚମେ ଚନ୍ଦ୍ରେ ବହୁସ୍ତ୍ରୀସହିତୋ ଭବେତ୍ ।

ଲଗ୍ନସ୍ଥ ବୁଧ ଲଗ୍ନେଶର ଦଶମେ ଥିବ । ସପ୍ତମେଶର ଭୃଗ୍ୱଂଶେ ଚନ୍ଦ୍ରମା ବହୁତ । ଏ ଯୋଗରେ ବନ୍ଧୁନାଶ କଷ୍ଟପ୍ର ହେବ ।

ଲଗ୍ନଦାରେଶ ଗ୍ରୌ ଯୁକ୍ତୌ ପରସ୍ପରନିରୀକ୍ଷିତୌ ।
ବଳାଢ୍ୟୌ ବା ତ୍ରିକୋଣସ୍ଥୌ ବନ୍ଧୁସ୍ତ୍ରୀସହିତୋ ଭବେତ୍ ॥

ଲଗ୍ନେଶର ଦାରେଶର ଦୁହେଁ ଯୁକ୍ତଥିବେ । କିମ୍ବା ପରସ୍ପର ଦେଖାଦେଖି ଯେ ହୋଇବେ । ବଳବନ୍ତ ହୋଇ ଅବା ଥିଲେ ତ୍ରିକୋଣରେ । ମାନବର ଏ ଯୋଗରେ ବନ୍ଧୁନାଶ ହୁଏ ।

ସ୍ତ୍ରୀଯୋଗେ ଦାରେଶସ୍ଥେ ଦଶମେଶ ସୁଖଭଂ ଗତେ ।
ସ୍ତ୍ରୀବେଶେ ଲଗ୍ନନାଥେ ଚ ଭେତ୍ ବନ୍ଧୁକଳତ୍ରକ ॥

ସପ୍ତମରେ ନବମେଶ, ଚତୁର୍ଥେ ଦାଶେଶ । ସପ୍ତମେଶ ବା ଲଗ୍ନେଶ ଭେଦେ, ହେଲେ ନାଶ । ବନ୍ଧୁନାଶ ହେବ କହଇ ଜ୍ୟୋତିଷ ।

ଦାରେଶସଂଯୁକ୍ତ ନବାଂଶନାଥେ ଲଗ୍ନାଂଶନାଥେ ମତ ସୌମ୍ୟଯୁକ୍ତେ ।
ପାପେକ୍ଷିତାଂଶାଧିପଗେ ବଲାଢ୍ୟେ ଜଂଶ ସ୍ତ୍ରୀସହିତୋ ନରଃ ସ୍ୟାତ୍ ।

ସପ୍ତମେଶ ଯେ ନବାଂଶେ ତହିଁର ଈଶ୍ୱର । ଯେ ନବାଂଶେ ଥାଇ ଥିଲେ ଶୁଭସଙ୍ଗର । ପାପେକ୍ଷିତାଂଶାଧିପରେ ବଳସ୍ଥ ହୋଇଥିଲେ । ବନ୍ଧୁଙ୍କ ବଢାହ ଯୋଗ ଘଟେ ତା ଯୋଗେନ ।

କୁଟୁମ୍ବନାଥସ୍ଥିତରାଶିନାଥସଂଯୁକ୍ତଷଷ୍ଠାଂଶପତୌ ବଳାଢ୍ୟେ ।
ମୃଦ୍ୱଂଶକେ ଗୋପୁରକେଂଶକେ ବା ଜାତଃ ସ୍ତ୍ରୀଗୁଣେନ ଯୁକ୍ତଃ ॥

ଧନପତି ଯେ ରାଶିରେ ତାହାର ଈଶ୍ୱର । ଯେ ଷଷ୍ଠାଂଶେ ରହଇ ତାର ଅଧୀଶ୍ୱର । ବଳସ୍ଥ ହୋଇଣ ମୃଦୁ ବା ଗୋପୁରାଂଶରେ । ଥିଲେ ଦୁଇଶତ ନାରୀ ଜନ ଭୋଗକରେ ।

ତୃତୀୟେଶାଂଶପଯୁକ୍ତ ରାଶିଜ ଅସ୍ମିନାଂଶାଧିପଗୌ ଚ ଭେଦେ ।
ମୃଦ୍ୱଂଶକେ ଗୋପୁରକେଂଶଯୁକ୍ତ ଜାତଃ ଜାତ୍ୟା ବିଂଶତି ବଧୂନାଂ ॥

ଦାରଭାବର ରହିବା ନବାଂଶ ଈଶ୍ୱର । ଯେ ନବାଂଶେ ଥାଏ, ଭେଦେ ଥିବ ତା ଈଶ୍ୱର । ମୃଦୁ ବା ଗୋପୁରାଂଶରେ ଏମନ୍ତ ଯୋଗରେ । ହୁଅନ୍ତି ବିଂଶ ନାରୀ ଉପଭୋଗ କରେ ।

ଦାରେଶେ ଗୋପୁରାଂଶସ୍ଥେ କର୍ମେଶେ ଦାରରାଶିଗେ ।
ତଥୈବ କୁଟୁମ୍ବେଶେ ଦଶସଂଖ୍ୟକଳତ୍ରକ ।

ସପ୍ତମେଶ ଗୋପୁରାଂଶେ ଥିବ ଯେବେ । ଦଶମ ଅଧିପ ସପ୍ତମରେ ଥିବ ଯାଇ । ସେହିପରି କୁଟୁମ୍ବେଶ ଥିଲେ ସପ୍ତମରେ । ଦଶଟି ବାହା ହୁଅଇ ନର ଏ ଯୋଗରେ ।

ଏବଂ ପୁତ୍ରାଦିଭାବାନାଂ ଫଳାନ୍ୟାଦିମାବିଶେତ୍ ।

ଏହିପରି ପୁତ୍ରାଦି ଭାବକୁ ଜାଯ୍ୟାସ୍ଥାନ । ଦେଖିଣ ତାଙ୍କର ଫଳ ଗଣିବେ ବଖାଣି ।

ଦାରେଶେ ପାପସଂଯୁକ୍ତେ ଦାରେ ବା ପାପସଂଯୁତେ ।
ଦାରେଶସ୍ଥାଂଶପେ ପାପେ କୁତ୍ସିତସ୍ତ୍ରୀ ସ ନରୋ ଭବେତ୍ ।
କ୍ରୂରଷଷ୍ଠ୍ୟଂଶକେ ଦାରନାଥେ କୁତ୍ସିତସ୍ତ୍ରୀଯୁତୋ ଭବେତ୍ ।

ସପ୍ତମେଶ ଯେବେ ହୋଇଥିବ ପାପଯୁତ । କିମ୍ବା ସପ୍ତମ ହୋଇଲେ ପାପର ସଙ୍ଗତ । ଦାରେଶଥିବା ନବାଂଶପତି ହେଲେ ପାପ । ଏଯୋଗେ କୁତ୍ସିତ ନାରୀ ଲଭଇ ସେ ଲୋକ । ଦାରନାଥ ଥିଲେ କ୍ରୂରଷଷ୍ଠି ଅଂଶଠାରେ । କୁତ୍ସିତା ନାରୀ ତାହାର ନର ଭୋଗ କରେ ।

ନୀଚାଂଶେ ନୀଚସଂଯୁକ୍ତେ ଦାରନାଥେ ଚ ଭାରବେ ।
କୁତ୍ସିତସ୍ତ୍ରୀଯୁକ୍ତୋ ଭବେଜ୍ଜାତଃ ଶୁଭଦୃଷ୍ଟିବିବର୍ଜିତେ ।

ଦାରନାଥ ଓ ଶୁକ୍ର ଥିଲେ ନୀଚଘରେ । ନୀଚନବମାଂଶେ ଅବା ଯେଉଁ ଠାରେ । ଶୁଭଗ୍ରହ ଦୃଷ୍ଟି ଯେବେ ନଥାଏ ତାଠାରେ । କୁତ୍ସିତ ନାରୀ ମିଳଇ ନର ନିଶ୍ଚୟରେ ।

ଦାରେଶେ ଶୁଭସଂଯୁକ୍ତେ ଶୁଭଖେଚରବୀକ୍ଷିତେ ।
ଶୁଭଗ୍ରହାଣାଂ ମଧ୍ୟସ୍ଥେ କୁଳନାରୀଯୁତୋ ଭବେତ୍ ।

ଶୁଭଗ୍ରହସଙ୍ଗେ କିମ୍ବା ଶୁଭର ଦୃଷ୍ଟିରେ । ଅବା ଯେବେ ରହେ ଦୁଇ ଶୁଭର ମଧ୍ୟରେ । ସପ୍ତମେଶ ଉତ୍ତମ ସ୍ତ୍ରୀ ଘଟଇ ଭାଗ୍ୟରେ ।

ଦାରେଶେ ଶୁଭବର୍ଗାଂଶେ ବଲବତ୍ୟେ ବା ତଥାବିଧେ ।
କର୍ମେଶେ ବଲସଂଯୁକ୍ତେ ସତ୍କୁଳସମନ୍ୱିତଃ ॥

ସପ୍ତମେଶ ବା କାରକ ଶୁଭବର୍ଗ, ଅଂଶେ । ରହିଲେ, ବିଶେଷବଳ ରହିଲେ କର୍ମେଶେ । ଏ ଯୋଗେ ଉତ୍ତମ ନାରୀ ମିଳେ ଧର୍ମବଶେ ।

ସ୍ୱୋଚ୍ଚେ ମିତ୍ରେ ସ୍ୱବର୍ଗେ ବା ଯେ ସୁସ୍ଥାଂଶକେ ଭୃଗୌ ।
ଷଷ୍ଠ୍ୟଂଶେ ମୃଦୁଭାଗସ୍ଥେ ସତ୍କୁଳସମନ୍ୱିତଃ ।

ଉଚ୍ଚ ବା ମିତ୍ରଘରେ ବା ନିଜ ବର୍ଗରେ । ଗୋପୁରାଦି ଅଂଶେ ଅବା ମୃଦୁ ଷଷ୍ଠ୍ୟଂଶରେ । ଭୃଗୁ ଥିଲେ ସୁକୁଳସ୍ତ୍ରୀ ଘଟଇ ଭାଗ୍ୟରେ ।

ଗୁରୁଣା ସହିତେ ଦୃଷ୍ଟେ ଦାରନାଥେ ବଲାନ୍ୱିତେ ।
କାରକେ ବା ତଥା ଭୂତେ ନରୋ ବୃଦ୍ଧପତିବ୍ରତା ।

ଜାଯ୍ୟାଭାବ ବା କାରକ କିମ୍ବା ବଳଯୁତ । ଗୁରୁଯୁକ୍ତ କିମ୍ବା ଦୃଷ୍ଟେ, ପତିବ୍ରତା ପତ୍ନୀ ।

ବଲାନ୍ୱିତେ ଭବୌ ବାପି ଭୃଗୌ ସୌମ୍ୟନିରୀକ୍ଷିତେ ।
ଗୁରୁଯୁକ୍ତେ ଭବେ ବା ଧର୍ମଶୀଳା ପତିବ୍ରତା ।

ସପ୍ତମାଧିପତି ହୋଇ ବକ୍ର ଅବା ଶୁକ୍ର । ଶୁଭଦୃଷ୍ଟିରେ ରହିଲେ, ଅଥବା ବଳବ--ସ୍ଥବେ ଗରୁଥିଲେ. ସତୀ ଭାନାଗ ଚରିବ ।

ବଳବାଧିପତୌ କେନ୍ଦ୍ରେ ଶୁଭଗ୍ରହନିରୀକ୍ଷିତେ ।
ଶୁଭାଂଶେ ଶୁଭରାଶୌ ବା ପତିବ୍ରତପରାୟଣା ।

ସପ୍ତମ ଈଶ୍ୱର ଯେବେ ଭଜଇ କେନ୍ଦ୍ରରେ । ଶୁଭନବମାଂଶ ଅବା ଶୁଭର ରାଶିରେ । ପତିବ୍ରତା ହୁଏ ନାରୀ ଶାସ୍ତ୍ରର ମତରେ ।

ବଳହୀନେ ରବୌ ବାପି ପାପର୍କ୍ଷାଂଶସଂଯୁତେ ।
ପାପାନ୍ୱିତେ ପାପଦୃଷ୍ଟେ ପତ୍ନୀ ମାତୃପରାୟଣା ।

ପାପରାଶି ଅବ ପାପ ନବାଂଶ ଉପରେ । ପାପଯୁକ୍ତ ଅବା ପାପଗ୍ରହର ଦୃଷ୍ଟିରେ । ସପ୍ତମାଧିପତି ହୋଇ ରବି ଥିଲେ ବାସ । ଅସତୀ ହୁଅଇ ନାରୀ କହଇ ଜ୍ୟୋତିଷ ।

ସ୍ମରେଣୌ ବଳବାଧିପତୌ ବଲାଢ୍ୟେ ଶୁଭାନ୍ୱିତେ ଶୋଭନରାଶିଭାଗେ ।
ଶୁଭଗ୍ରହେଣାପି ନିରୀକ୍ଷିତେ ବା ଲଗ୍ନେଶମିତ୍ରେ ପତିଭକ୍ତିଯୁକ୍ତା ।

ରବି ବଳଯୁକ୍ତ ହୋଇ ଥିଲେ ସପ୍ତମେଶ । ଶୁଭସଙ୍ଗେ ଶୁଭରାଶି ଅଂଶେ କଲେ ବାସ । ଶୁଭଗ୍ରହର ଦୃଷ୍ଟିରେ ଅବା ଥିଲେ ରହି । ଲଗ୍ନେଶ ତା ମିତ୍ର ହେଲେ ନାରୀ ସତୀ ହୋଇ ।

ଦାରେଶ୍ୱରେ ବା କୁମୁଦାମ୍ବୁବନ୍ଧୌ ପାପାନ୍ୱିତେ ପାପନିରୀକ୍ଷିତେ ବା ।
ପାପାଂଶକେ ପାପଗ୍ରହାନ୍ତରସ୍ଥେ କୁମାର୍ଗଚାରୀ କଠିନା ପରାଧ୍ୱା ।

ସପ୍ତମେଶ ଅବା ଶଶୀ ହେଲେ ପାପଯୁକ୍ତ । ପାପଦୃଷ୍ଟିଗତ ଅବା ପାପମଧ୍ୟସ୍ଥିତ । ପାପନବାଂଶରେ ଅବା ଯେବେ ଥାଏ ରହି । ଅତ୍ୟନ୍ତ ଅସତୀ ଅବଶ୍ୟ ନାରୀ ହୋଇ ।

ସୌମ୍ୟାଂଶକେ ସୌମ୍ୟଗୃହାନ୍ୱିତେ ବା ମିତ୍ରୋଚ୍ଚଗେହେ ମୃଦୁଭାଗଯୁକ୍ତେ
ଚନ୍ଦ୍ରେ କଳତ୍ରାଧିପତୌ ଚ ଶୁକ୍ରେ ପୁଣ୍ୟା ସୁଶୀଳା ସୁଚରିତ୍ରଯୁକ୍ତା ।

ଜାୟାଧିପ, ନିଶାନାଥ ଆଉ ଭୃଗୁସୁତ । ଶୁଭଗୃହେ ବା ଶୁଭନବାଂଶେ ହେଲେ ସ୍ଥିତ । ଉଚ୍ଚେ ବା ମିତ୍ରଗୃହରେ ମୃଦୁଷଷ୍ଟି ଅଂଶେ । ଥିଲେ, ସତୀ ହୁଏ ନାରୀ କହଇ ଜ୍ୟୋତିଷେ ।

ଦାରାଧିପେ ହୀନବଳେ ଧରାଜେ କ୍ରୂରାଦିଷଷ୍ଠ୍ୟଂଶଯମାନ୍ୱିତେ ବା ।
ଲଗ୍ନେ ଚ ମୃତେ ବହୁରୋଗଭାବେ ଦୁଷ୍ଟାନ୍ୟସକ୍ତା ପତିବର୍ଜିତା ସା ।

ଦୁର୍ବଳ ମଙ୍ଗଳ ହୋଇଥିଲେ ଜାୟାପତି । ନୀଚରେ ବା ଶତ୍ରୁଗୃହେ କରିଲେ ବସତି । କ୍ରୂରଷଷ୍ଟିଅଂଶେ କିମ୍ବା ହେଲେ ଅସ୍ତଗତ । ନିଷ୍ଠୁରା ଅସତୀ ଦୁଷ୍ଟା ନାରୀ ହୁଏ ସତ୍ୟ ।

ମିତ୍ରୋଚ୍ଚବର୍ଗେ ଯଦି ଦାରନାଥେ ଶୁଭାନ୍ୱିତେ ସୌମ୍ୟଦୃଶା ସମେତେ
ପାରାବତାଂଶାଦିଗତେ ବଳାଢ୍ୟେ ସ୍ୱରୂପ ପତ୍ୟର୍ପଣମାର୍ଗଯୁକ୍ତା ।

ମିତ୍ରଗୃହେ ଉଚ୍ଚେ ଅବା ନିଜଷଡ୍ବର୍ଗରେ । ଶୁଭସଙ୍ଗେ ଅବା ଥିଲେ ଶୁଭଗ୍ରହ ଦୃଷ୍ଟିରେ । ପାପବର୍ଗଅଂଶେ ଅବା ଥିଲେ ବଳୀ ହୋଇ । ଚନ୍ଦ୍ରସୁତ ନାରୀ ମଲେ ପତିକୁ ସେବଇ ।

ଦାରାଧିପେ ସୋମସୁତେ ସପାପେ ନୀଚାରିମୂଢେ ଯଦି ନାଶଭାବେ ।
ପାପାନ୍ତରେ ପାପଦୃଶା ସମେତେ ଜାୟା ପତିଘ୍ନୀ କୁଲନାଶକର୍ତ୍ରୀ ॥

ବୁଧ ଜାୟାଧିପ ହୋଇ ହୋଇଲେ ପାପଯୁକ୍ତ । ପାପଦୃଷ୍ଟିରେ ବା ପାପମଧ୍ୟେ ହୋଇଲେ ସ୍ଥିତ । ନୀଚରେ ବା ଶତ୍ରୁଘରେ ଅଥବା ବ୍ୟୟରେ । ଅସ୍ତଗତ ହୋଇଲେ ଅବା ଅଷ୍ଟମେ ଏ ଯୋଗରେ । ସେ ନାରୀ ନିଜର ପତିବଂଶ ନାଶ କରେ ।

ସୁପୁତ୍ରସୌଖ୍ୟାନ୍ୱିତଧର୍ମଶୀଲା ଭର୍ତ୍ତୋପକାରାଦରଶୁଦ୍ଧଦେହା ।
ସୌମ୍ୟେ କଲତ୍ରାଧିପତୌ ବଲାଢ୍ୟେ ମିତ୍ରୋଚ୍ଚବର୍ଗେ ଯଦି ଗୋପୁରାଂଶେ

କଳତ୍ରେଶ ଶୁଭ ହୋଇ ହୋଇଲେ ବଳବନ୍ତ । ମିତ୍ରଘରେ, ଉଚ୍ଚେ ଅବା ସ୍ୱକ୍ଷଡ୍ବର୍ଗସ୍ଥିତ ଗୋପୁରଅଂଶରେ କିମ୍ବା ଯେବେ ଥାଏ ବନ୍ଧ । ସର୍ବଗୁଣଯୁକ୍ତ ନାରୀ ପୁରୁଷ ଲଭଇ ।

ଭୃଗୋଃ ସୁତେ ଦାରପତୌ ସପାପେ ନୀଚାନ୍ୱିତେ ନୀଚଭମୂଢଗେହେ ।
କ୍ରୂରାରିଷଷ୍ଟ୍ୟଂଶସମନ୍ୱିତେ ବା ବେଶ୍ୟାସମାନା କଠିନା ହି ରୌଦ୍ରା ॥

ଜାୟାଧିପ ହୋଇ ଶୁକ୍ର ହୋଇଲେ ପାପଯୁକ୍ତ । ନୀଚଗ୍ରହଯୁକ୍ତ କିମ୍ବା ନୀଚରାଶିସ୍ଥିତ । ଅସ୍ତଗତ କିମ୍ବା କ୍ରୂରଷଷ୍ଟ୍ୟଂଶସ୍ଥିତ । ହୋଇଲେ, ନାରୀ ହୁଏ ବେଶ୍ୟା ସମ ରୌଦ୍ର ସତ୍ୟ

ଶୁକ୍ରେ କଲତ୍ରାଧିପତୌ ବଲାଢ୍ୟେ ଶୁଭାନ୍ୱିତେ ଶୋଭନଖେଚରାଂଶେ ।
ମିତ୍ରୋଚ୍ଚବର୍ଗେ ସ୍ୱଗୃହେ ମୃଦୂଷ୍ଣେ ବାଗ୍ମିନୀ ପୁତ୍ରବତୀ ଗୁଣାଢ୍ୟା ।

ଜାୟାଧିପ ହୋଇ ଶୁକ୍ର ହୋଇଲେ ବଳଯୁକ୍ତ । ଶୁଭଯୁକ୍ତ କିମ୍ବା ଶୁଭନବମାଂଶେ ସ୍ଥିତ । ଉଚ୍ଚେ ବା ମିତ୍ରେ ବା ନିଜଗୃହେ ଥିଲେ ବନ୍ଧ । ମୃଦୁଅଂଶେ ଅବା ନାରୀ ଗୁଣବନ୍ତ ହୋଇ ।

ଜରତ୍ତଦୃଷ୍ଟା କୁଲଦୂଷଣୀ ସ୍ୟାନ୍ମନ୍ଦେ କଲତ୍ରାଧିପତୌ ସପାପେ,
ନୀଚାଂଶକେ ନୀଚଗୃହେଽରିଗେହେ ପାପେକ୍ଷିତେ ପାପଯୁତସ୍ୟାଂଶେ ।

ଶନି ଜାୟାଧିପ ହୋଇ ହୋଇଲେ ପାପଯୁକ୍ତ । ଶତ୍ରୁଗୃହେ ନୀଚେ ବା ନୀଚନବାଂଶେ ସ୍ଥିତ ପାପଦୃଷ୍ଟି ଘରେ ଅବା ପାପନବାଂଶରେ । ଥିଲେ ଜରା ଅତିଦୁଷ୍ଟା ନାରୀ ମିଳେ ତାରେ

ସଦ୍ଗୁପକାରଦ୍ୱିଜଦେବଭକ୍ତା ସ୍ତ୍ରୀ ବ୍ରତବତୀ ଗୁରୁଦୃଷ୍ଟିଯୁକ୍ତେ ।
ଶୁଭେକ୍ଷିତେ ଧର୍ମଯୁତା ସୁଶୀଲା ମନ୍ଦେ କଲତ୍ରାଧିପତୌ ବଲାଢ୍ୟେ ।

କଳତ୍ରେଶ ହୋଇ ଶନି ହେବ ବଳଯୁକ୍ତ । ଗୁରୁ ଦୃଷ୍ଟି ଯେ ବଢ଼ିଲେ ତା ନାରୀ ପବିତ୍ର । ଶୁଭଦୃଷ୍ଟି ଯେବେ ସେହି ଶନିଠାରେ ଥାଏ । ଧର୍ମବତୀ ଗୁଣବନ୍ତ ନାରୀ ଲଭନ୍ତଏ ।

ସସ୍ତ୍ରକେଜୌ ମଦନେଽନ୍ୟସକ୍ତା ପାସେକ୍ଷିତେ ପାପରତା ଭୂଶୀଳା ।
ଚଗ୍ଣଂଶକେ ଭର୍ତ୍ତୃବିଷପ୍ରଦା ସ୍ୟାଲ୍ଲେ ବାପବାଦାଦ୍ଧ୍ବ ଚବର୍ଜ୍ଜଣା ସ୍ୟାତ୍ ।

ସପ୍ତମରେ ଶତ୍ରୁ କନ୍ୟା ଷେତ୍ରୁ ଯେବେ ଥାଇ । ଅସଭ ହୁଅଇ ନାରୀ ସନ୍ଦେହ ଯେ ନାହିଁ । ପାପଦୃଷ୍ଟି ଥିଲେ ଏ ଯୋଗରେ ପାପରତା । ମାନବ ଲଭଇ ନାରୀ କୁତ୍ସିତଚରିତା । କୁରଷଷ୍ଠିଅଂଶେ ଜେବୁ ଶତ୍ରୁ ଥିଲେ ବହୁ । ଅପର ଦାପୁତା ଦତବିଷପ୍ରଦା ସେହୁ ।

ଦାରେଶ୍ୱରେ ସନ୍ନିହିତେ ବିଲଗ୍ନନାଥସ୍ୟ ବାଲ୍ୟେ ପରଣୀତମାହୁଃ ।
ଲଗ୍ନାତ୍ ଚଳବାତ୍ ଶୁଭଖେଚରେନ୍ଦ୍ରେ ସମୀପସଂଶୌ ଯଦି ତଉଥୈବ ।

ଲଗ୍ନାଧିପ ନିକଟରେ ଥିଲେ ଦାରେଶ୍ୱର । ବାଲ୍ୟ ଅବସ୍ଥାରେ ବିବାହ କରଇ ନର । ଲଗ୍ନର ବା ସପ୍ତମର ପାଶେ ଶୁଭ ଥିଲେ । ବାଲ୍ୟେ ବିବାହ କରଇ ଜ୍ୟୋତିଷରେ ବୋଲେ ।

ଲଗ୍ନେ କୁଟୁମ୍ବେ ଯଦି ଦାରଗୃହେ ଶୁଭ୍ରାନ୍ଧ୍ବିତେ ଶୋଭନବର୍ଗଯୁକ୍ତେ ।
ତଦୀଶ୍ୱରେ ଶୋଭନଦୃଷ୍ଟିଯୁକ୍ତେ ବାଲ୍ୟେ ବିବାହାଦିକମାହୁରାଦ୍ୟାଃ ।

ଲଗ୍ନ, ଧନ କିମ୍ବା ଦାରଗୃହ ଶୁଭଯୁତ । ଦାରେଶ୍ୱର ଶୁଭ ଷଡ୍ବର୍ଗରେ ସ୍ଥିତ । ଶୁଭଦୃଷ୍ଟିରେ ବା ଶୁଭସଙ୍ଗେ ଯେବେ ଥାଏ । ବାଲ୍ୟକାଳରେ ବିବାହ ନିଶ୍ଚୟ କରାଏ ।

ପାପରତାଂଶାଦମଗେ କଳନାଥେ କୁଟୁମ୍ବାଧିପତୌ ବଳାଢ୍ୟେ ।
ମୃଦ୍ୱାଂଶ୍ୟଗ୍ରେ ତନୁଗ୍ରହନାଥେଽବାଲ୍ୟେ ବିବାହଂ ମୁନୟୋ ବଦନ୍ତି ।

ପାପରତଅଂଶାଦରେ ଥିଲେ ସପ୍ତମେଶ । ଦ୍ୱିତୀୟାଧିପତି ହେଲେ ବଳରେ ବିଶେଷ । ଲଗ୍ନନାଥ ଯେବେ ମୃଦୁ ଷଷ୍ଟିଅଂଶେ ଥାଏ । ବାଲକାଳରେ ବିବାହ ନିଶ୍ଚୟ କରାଏ ।

ଭାଗ୍ୟଂ ବିବାହାତ୍ ପରତୋ ବଦନ୍ତି ଶୁକ୍ରେଽସ୍ତଗେ ବୋପଚୟାନ୍ଧ୍ବିତେ ବା ।
କୁଟୁମ୍ବଗେ ତାଦୃଶଭାବଯୁକ୍ତେ ଲଗ୍ନେଶ୍ୱରେ ବା ଶୁଭଦୃଷ୍ଟିଯୋଗେ ।

ବିବାହର ପରେ ଭାଗ୍ୟ ଉଦୟ ହୁଅଇ । ଶୁକ୍ର ସପ୍ତମେ ବା ଉପଚୟେ ✱ ଯେବେ ଥାଇ । କିମ୍ବା ଦ୍ୱିତୀୟରେ ଥିଲେ ଶୁଭଦୃଷ୍ଟି ଠାବେ । ଲଗ୍ନେଶ ଏପରି ଥିଲେ ଏହୁଫଳ କରେ ।

ଚଳାବନେ ଦାରପତୌ କୁଟୁମ୍ବନାଥେ ବିଲଗ୍ନାଧିପତୌ ଚ ଦୁଷ୍ଟେ ।
ନୀଚାରିମୂଢ଼ାଂଶଗତେ ସପାପେ ଭାଗ୍ୟଂ ବିବାହାତ ପ୍ରବନାଶମେତି ।

---

✱ ଜିଷଡ୍ଭବାଦଶଦଶମା ଉପଚୟସ୍ଥାନାଃ (୩,୬,୧୧,୧୦) ଏହାଛଡ଼ା ଅନ୍ୟଗୁଡ଼ିକ ଅପଚୟସଂଜ୍ଞକ ।

ଦାରିଦ୍ରାକର ଷଷ୍ଠ କୁଟୁମ୍ବନାଥ । ଲଗ୍ନାଧିପ ଏମାନେ ହେଲେ ଅଷ୍ଟମେ ସ୍ଥିତି ।
ନୀଚରେ ବା ଶତ୍ରୁଘରେ ବା ପାପଯୁକ୍ତ । ଅସ୍ତ ବା ଥିଲେ ବିବାହପରେ ଭାଗ୍ୟ ନଷ୍ଟ ।

ଚନ୍ଦ୍ରାଦଷଷ୍ଠାଂଶସମ୍ବନ୍ଧେଽପି ତଦ୍ଭାବଗେ ତାଦୃଶଖେଚରେନ୍ଦ୍ରେ ।
ସମ୍ବନ୍ଧେ ଶୋଭନଦୃଷ୍ଟିପାତେ ନାଶଂ ପରଂ ଭାଗ୍ୟମୁପୈତି ଜାତଃ ।

ଦାରକାରକ ବା ପୂର୍ବଗ୍ରହରୁ ଏକାଇ । ଶୁଭଯୁକ୍ତ କିମ୍ବା ଦୃଷ୍ଟ ଯେବେ ହୋଇଥାଇ ।
ଚନ୍ଦ୍ରଷଷ୍ଠି ଅଂଶରେ କରିଥିଲେ ସେ ବାସ । ପରେ ଭାଗ୍ୟ ଲଭନ୍ତି ଏ ଅଗ୍ରେ ତୁ ଏ ନାଶ ।

ଚନ୍ଦ୍ରେ କଳତ୍ରେଶଯୁତେ ତ୍ରିକୋଣେ ତଦ୍ଭାବଗେ ପାପସମ୍ବନ୍ଧତେ ବା ।
କୁଟୁମ୍ବଗୌ ଯଦି ବା ନ ମାନେ ଦୂରେ ବିବାହାତ୍ କଥୟନ୍ତି ସନ୍ତଃ ।

ପାପଯୁକ୍ତ ସପ୍ତମେଶ ଥିଲେ ତ୍ରିକୋଣରେ । ଅଥବା ଜାୟାକାରକ ପାପର ସଙ୍ଗରେ
ଦ୍ୱିତୀୟରେ ବା ଦଶମେ ଯେବେ ଥାଏ ଏହି । ବିବାହର ବହୁଦୂରେ ଭାଗ୍ୟ ଲଭ ହୋଇ

ମାନେ ସପାପେ ଯଦି ବା କୁଟୁମ୍ବେ ଭାଗ୍ୟେଽଥବା ପାପଯୁତେ କଳତ୍ରେ ।
ଚନ୍ଦ୍ରାଂଶକେ ଚନ୍ଦ୍ରଚରାଂଶିତେ ବା ଦୂରେ ବିବାହାତ୍ କଥୟନ୍ତି ସନ୍ତଃ ।

ପାପଯୁକ୍ତ କିମ୍ବା ଦୃଷ୍ଟ ସପ୍ତମଈଶ୍ୱର । ଦଶମେ ବା ଦ୍ୱିତୀୟରେ ଅବା ନବମର ।
ଚନ୍ଦ୍ରଷଷ୍ଠି ଅଂଶେ ଥିଲେ ବିବାହକାଳରୁ । ବହୁଦୂରେ ଭାଗ୍ୟଲଭ ଜାଣିବ ଶାସ୍ତ୍ରରୁ ।

ପୂର୍ବାଦିଲଗ୍ନେଷ୍ୱପ୍ୟେବମେବ ମାର୍ଗସ୍ଥଂ ଚନ୍ଦ୍ରୟିତ୍ୱା କଥୟେତ୍ ସୁଧୀମାନ୍ ।

ବିବାହରୁ ଭାଗ୍ୟଲାଭ କହିବ ଯେପରି । ପୂର୍ବାଦିରୁ ପୂର୍ବଲାଭ କହିବ ସେପରି ।

ଲଗ୍ନେଶ୍ୱରେ ହୀନବଳେ କଳତ୍ରନାଥେ ବଳାଢ୍ୟେ ଶୁଭଗାଂଶଯୁକ୍ତେ ସମେତେ ।
ନୀଚାଂଶକେ ନୀଚସମ୍ବନ୍ଧତେ ବା ନିକୃଷ୍ଟଜାତୌ ହି କଳତ୍ରଲାଭଃ ॥

ଲଗ୍ନେଶରୁ ହୀନବଳ ହୋଇ ଜାୟାପତି । ନୀଚଗ୍ରହ ସଙ୍ଗେ ବା ନୀଚରେ କଲେ ସ୍ଥିତି
ଶତ୍ରୁଗୃହାଦିରେ ଥିଲେ କିମ୍ବା ହେଲେ ଅସ୍ତ । ନିକୃଷ୍ଟଜାତିରୁ କନ୍ୟା ଲଭଇ ନିଶ୍ଚିତ

ଲଗ୍ନେଶ୍ୱରାତ୍ ପୂର୍ଣ୍ଣବଳେ କଳତ୍ରନାଥେ ଶୁଭାଂଶେ ଶୁଭଦୃଷ୍ଟିଯୁକ୍ତେ ।
ବୈଶେଷିକାଂଶେ ପରମୋଚ୍ଚଭାଗେ ଉତ୍କୃଷ୍ଟଜାତୌ ହି କଳତ୍ରଲାଭଃ ।

ସପ୍ତମେଶ ଲଗ୍ନେଶରୁ ବଳବନ୍ତ ହୋଇ । ଶୁଭସଙ୍ଗେ ବା ଦୃଷ୍ଟିରେ ଶୁଭାଂଶ ଗତେ ଥାଇ । ବୈଶେଷିକଅଂଶେ ଅବା ପରମଉଚ୍ଚରେ । ଥିଲେ, ବିବାହ କରଇ ଉତ୍କୃଷ୍ଟ ଜାତିରେ ।

ଲଗ୍ନେଶ୍ୱରେ ହୀନବଳେ କଳତ୍ରନାଥାତ୍ ସପାପେ ଯଦି ନୀଚଗେ ବା ।
ନାଶସ୍ଥିତେ ବାପ୍ୟଶୁଭେଶୁଭେ ବା କଳତ୍ରଜାତେଃ ସ୍ୱସମାନହୀନଃ ।

ସପ୍ତମେଶରୁ ଦୁର୍ବଳ ହୋଇ ଲଗ୍ନେଶ୍ୱର । ପାପସଙ୍ଗେ ବା ନୀଚରେ ଅଥବା ଦ୍ୱାଦଶର । କିମ୍ବା ଅଷ୍ଟମସ୍ଥ ହୋଇଥିଲେ, ଜାୟାଠାରୁ । ନିଜଜାତି ହୀନ ବୋଲି କହିବ କୋଷ୍ଠୀରୁ ।

ତସ୍ମାଦ୍ବଳାଢ୍ୟେ ତୁ ବିଲଗ୍ନନାଥେ ଦ୍ୟୁଗେହଭାଗେ ଶୁଭଯୋଗଶୁଭାଂଶେ ।
କେନ୍ଦ୍ରତ୍ରିକୋଣେ ଯଦି ବା ସବୀର୍ଯ୍ୟେ ଶ୍ରେଷ୍ଠଃ କଳତ୍ରାତ୍ ସ୍ୱସୁଖମେବ ଜାତଃ ।

ସପ୍ତମେଶଠାରୁ ବଳବନ୍ତ ହୋଇ ଲଗ୍ନନାଥ । ଶୁଭସଙ୍ଗେ କେନ୍ଦ୍ର ବା ତ୍ରିକୋଣେ ହେଲେ ସ୍ଥିତ । ଅଗ୍ରେହା ହେଲେ ବା ଶୁଭକ୍ଷେତ୍ରେ ଥିଲେ ଯଦି । ନାରୀଠାରୁ ଜାତକ ସେ ଜାତଶ୍ରେଷ୍ଠ ହୋଇ ।

କଳତ୍ରନାଥାଦ୍ ଯଦି ବା ବିଲଗ୍ନସ୍ୱାମିନଃ କୁଟୁମ୍ବାଧିପତେର୍ଦେବଦ୍ବା ।
ବଲେନ ସାମ୍ୟେ ସମକଂ ତଥାନ୍ୟସ୍ତ୍ରୀଷୁଂ ସୁଶୀଳାଂ ପତିଭକ୍ତିବନ୍ତାଂ ।

ଜାୟାସ୍ଥାନ ବା ତତ୍ପତି କିମ୍ବା ଧନେଶ୍ୱର । ସମାନ ବଳିଷ୍ଠ ହେଲେ ଲଗ୍ନେଶ ସଙ୍ଗର । ପତିବ୍ରତା ସୁଚରିତା ନାରୀ ଜାତକର ।

ଲଗ୍ନେଶ୍ୱରସ୍ୟାପି କଳତ୍ରନାଥେ ଶତ୍ରୌ ତଦାପ୍ୟସ୍ତି ହି ଶତ୍ରୁଭୂତଃ ।
ନିହନ୍ତି ତେ ତସ୍ୟ କୁଲୋଦ୍ଭବାଃ ସ୍ୟୁର୍ନିନ୍ଦ୍ୟେ ବିଲଗ୍ନାଧିପତେସ୍ତଦାନୀଂ ।

ଲଗ୍ନେଶର କଳତ୍ରେଶ ଶତ୍ରୁ ଥିଲେ ହୋଇ । ବଳହୀନଲୋକଙ୍କ ସଙ୍ଗେ ନ ପଡ଼ଇ । ସପ୍ତମେଶ ଲଗ୍ନେଶ୍ୱର ଦୁହେଁ ହେଲେ ନିନ୍ଦ । ନାରୀକୁଳଜାତ-ଲୋକେ ହୁଅନ୍ତି ବା ନିନ୍ଦ ।

ଦାରେଶ୍ୱରସ୍ୟାପି ବିଲଗ୍ନନାଥେ ଶତ୍ରୌ ତଦାପ୍ୟସ୍ତ୍ୟୁରସ୍ତତୋଽନ୍ୟେ ।

ସପ୍ତମେଶର ହୋଇଲେ ଶତ୍ରୁ ଲଗ୍ନପତି । ଜାୟା ଓ ତାକୁଳ ଲୋକେ ଦୁଷ୍ଟେ ଶତ୍ରୁ ହୁଅନ୍ତି । ନିନ୍ଦ ହେଲେ ନିନ୍ଦାପର ସର୍ବେ ଆଚରନ୍ତି ।

କଳତ୍ରାଧିପତେର୍ବର୍ଣ୍ଣଂ ଗ୍ରହେର୍ବା କାରକସ୍ୟ ଚ ।
ସର୍ବୋତ୍ତମବଲସ୍ୟୈବ ତେଷାଂ ମଧ୍ୟେ ବିନିର୍ଦ୍ଦିଶେତ୍ ।

ସପ୍ତମ, ସପ୍ତମାଧିପ, ଜାୟାର କାରକ । ଏମାନଙ୍କ ମଧ୍ୟେ ଜଣେ ବଳୀ ଯାହା ଦେଖ । ସେହୁ ବଳୀ ତା ବର୍ଣ୍ଣରୁ ନାରୀବର୍ଣ୍ଣ ଲେଖ ।

ସୁଗୁଣା ରୂପସମ୍ପନ୍ନା ତସ୍ମିନ୍ ଗୁର୍ବିନ୍ଦୁବୀକ୍ଷିତେ ।
ପାପେକ୍ଷିତେ ପାପଯୁକ୍ତେ କୁରୂପା ଦୁର୍ଗୁଣା ଭବେତ୍ ।

ପୂର୍ବୋକ୍ତଙ୍କ ମଧ୍ୟରୁ ଯେ ବଳୀ ତାଠାରେ । ଗୁରୁ ଶୁକ୍ର ଦୃଷ୍ଟି ଥିଲେ ରୂପରେ ଗୁଣରେ । ଉତ୍କୃଷ୍ଟ ହୁଅଇ ନାରୀ ପାପଦୃଷ୍ଟି ଯୋଗେ । ଅସୁନ୍ଦରୀ କୁତ୍ସିତା ନାରୀ ମିଳେ ଭାଗ୍ୟେ ॥

କଳତ୍ରନାଥସ୍ଥିତଭଂ ତଦୀଶଂ ଦିଶଂ କଳତ୍ରସ୍ୟ ବଦୁର୍ମହାନ୍ତଃ ।
ତସ୍ୟୋଦ୍ଗମଂ ଯଦ୍ବା କଳତ୍ରସଂସ୍ଥଂ ତଦଂଶକାଧିଷ୍ଠିତଂ ତଦୀୟଂ ।

ସପ୍ତମେଶ ଥିବା ଘର ୧ ସପ୍ତମ ଭବନ ୨ । ସପ୍ତମପତିର ଉଚ୍ଚ ନୀଚ ଦୁଇସ୍ଥାନ ୩ ୪ । ଏହୁ ତିନଙ୍କ ଅଂଶୁ ବା କଳତ୍ର ଦେଖିବେ । ଯେହୁ ବଳୀ ସେହିଁକୁ ବଧୂର ସଦନରେ

କଳତ୍ରରାଶୀଶ ଉଦୟେଽଥବା ସ୍ୟାତ୍ ତଦୀଶସଂଯୁକ୍ତତ୍ରିକୋଣରାଶୌ ।
କଳତ୍ରରାଶିଂ ସମୁଦାହରନ୍ତି ପ୍ରୋକ୍ତାନ୍ୟରାଶୀ ତଦ ନାସ୍ତି ପୁଂସଃ ।

ପୂର୍ବୋକ୍ତଜନ୍ମସ୍ଥାନଂଅଧ କଳତ୍ରେଶଯୁକ୍ତ—ରାଶିର ତ୍ରିକୋଣ ଏ ଜାୟାରାଶି କଥିତ । ଏଥି ଏକ ବଳୀ ହୁଅ କଳତ୍ରଗ୍ରହଯୁକ୍ତ । ହେଲେ ଧ୍ରୁବ ପୁତ୍ରଲାଭ ଅନ୍ୟଥା ଅପୁତ୍ର ।

ଗୋସିଂହକନ୍ୟାଦଷ୍ଟ ଜନ୍ମରାଶିଃ ସ୍ତ୍ରୀଣାଂ ଭବେଦଳ୍ପଗଣ ବାଲ୍ପପୁତ୍ରା ।
ଶୁଭଗ୍ରହେଷ୍ଟହମିତେଷୁ ତେଷୁ ପୁତ୍ରାନ ବଦେଦତ୍ ତତ ବହୂନ୍ ଗୁଣାଢ୍ୟାନ୍ ।

ଜନ୍ମରେ ଦାଣ୍ଡର ସିଂହ କନ୍ୟା କମ୍ବା ବୃଷ । ରାଶି ହେଲେ ପୁତ୍ରଲାଭ ନ ହୁଏ ବିଶେଷ । ଏ ରାଶିରେ ଶୁଭଗ୍ରହ ଯେବେ ଥାନ୍ତି ବହୁ । ଗୁଣଯୁକ୍ତ ବହୁପୁତ୍ର ସେ ନାରୀ ଲଭଇ ।

କନ୍ୟାସଙ୍ଗୋ ମନ୍ଦେ ଭାନୌ ଚନ୍ଦ୍ରେ ଦାସୀସମାଶ୍ରୟଃ ।
କୁଜେ ରଜସ୍ୱଳାସଙ୍ଗୋ ବନ୍ଧ୍ୟାସଙ୍ଗସ୍ତୁ କୀର୍ତ୍ତିତଃ ।

କନ୍ୟାସଙ୍ଗ କରାଏ ସପ୍ତମେ ଥିଲେ ରବି । ଚନ୍ଦ୍ର ଥିଲେ ଦାସୀଠାରେ ହୁଏ ଅନୁରାଗୀ । କୁଜ ଥିଲେ ବନ୍ଧ୍ୟା ରଜସ୍ୱଳା ସଙ୍ଗ ଭାବ ।

ବୁଧେ ବେଶ୍ୟାର୍ଥହୀନା ବା ବଣିକ୍ସ୍ତ୍ରୀ ବା ପ୍ରକୀର୍ତ୍ତିତା ।
ଗୁରୌ ବ୍ରାହ୍ମଣୀସର୍ପା ସ୍ୟାଦ୍ୱର୍ଣ୍ଣୀସଙ୍ଗମୋ ଭୃଗୌ ।

ବୁଧ ଥିଲେ ବେଶ୍ୟା ବା ଭିକାରଣୀରେ ରତ । କମ୍ବା ବଣିକର ନାରୀ ସଙ୍ଗେ ହୁଏ ଯୁକ୍ତ । ଗୁରୁ ଥିଲେ ବ୍ରାହ୍ମଣୀସଙ୍ଗମ ଉପୁଜିବ । ଶୁକ୍ର ଥିଲେ ଗର୍ଭବତୀ ସଙ୍ଗରେ ମିଳାଏ ।

ହୀନା ବା ପୃଷ୍ଟିଜା ବା ସ୍ୟାତ୍ ମ୍ଳେଚ୍ଛସଙ୍ଗନୈଷ୍ଟରୈଃ ।
ରାହୌ ଚ ଗର୍ଭିଣୀସଙ୍ଗଃ କୃଷ୍ଣସ୍ତ୍ରୀ କୁତ୍ସ୍ୟା ଶନୌ ।

ମ୍ଳେଚ୍ଛଜାତ କମ୍ବା ରଜୋଵତୀ ସଙ୍ଗକରେ । କେତୁ ରାହୁ କମ୍ବା ଶନି ଥିଲେ ସପ୍ତମରେ । ରାହୁ ଥିଲେ ଗର୍ଭବତୀ ସେହି ନାରୀ ଜାଣ । ଶନି ଥିଲେ କୁତ୍ସି କାଳୀ ତାହାକୁ ବଖାଣ ।

ଏବଂ ସୁଖସ୍ଥିତୈରେତୈର୍ବିସ୍ତୃକସ୍ତ୍ରୀସଙ୍ଗମୂହ୍ୟତାଂ ।
ସୂର୍ଯ୍ୟାଦ୍ୟୈଃ ସୁଖଗୈର୍ବାଚ୍ୟଂ ବାହନଂ ଗୃହଜର୍ତ୍ତୁଯୁଃ ।

ଚତୁର୍ଥରେ ଥିବା ଗ୍ରହଠାରୁ ପୂର୍ବପର । ସ୍ତ୍ରୀଲୁଷବ ପନେ ଗ ସଙ୍ଗମ କରଇ । ସୂର୍ଯ୍ୟାଦିକ୍ରମରେ ଚତୁର୍ଥରେ ଥିବା ଗ୍ରହ । ଏଙ୍ଗମର ସ୍ଥ ନ ପରବାକ୍ୟୋ କ୍ରମେ କହୁ

ବନଂ ଗୃହଞ୍ଚ କୃତ୍ୟଂ ସ୍ୟାଦ୍ଵିହାସେ ଦେବତାଳୟଃ ।
ଜଳଂ ଚଜସ୍ତ୍ରଭୂଷ ନମିତ ସ୍ଥାନଭୂଷଣଂ ।

ବନରେ, ଗୃହରେ, କୁଡ଼ିଆରେ ବଗିଚାରେ । ଦେବାଳୟେ, ଜଳେ, ହାଟ ବା ଘୋଡ଼ାଶାଳରେ । ନାରୀ ପୁରୁଷର ଯୋଗ ହୁଅଇ ଜାଣିବ । ଶୟନସ୍ଥାନ (ଗୁହାଳ) ଗୃହ କେନ୍ଦ୍ରକର ବଖାଣିବ ।

ପାପୈର୍ଯୁକ୍ତେ ଚତୁଷ୍ଟେନ୍ଦେ ଚତୁଷ୍ପାନ୍ସେ ମୈଥୁନଂ ବଦେତ୍ ।
ପାପୈର୍ଦୃଷ୍ଟେଷୁ କେନ୍ଦ୍ରେଷୁ ସର୍ବେଷ୍ୱେବଂ ବଦନ୍ତ୍ୟୁଃ ।

ପାପଯୁକ୍ତ କିମ୍ବା ଦୃଷ୍ଟ ହେଲେ ଗୃହକେନ୍ଦ୍ର । ପଶୁପରି ମଇଥୁନ କରଇ ନରେନ୍ଦ୍ର,

କେନ୍ଦ୍ରେ କୋଣେ ପାପଯୁତେ ପଶୁବନ୍ମୈଥୁନଂ ବଦେତ୍ ।
ମନ୍ଦେ ପାପାନ୍ୱିତେ ବାପି ସମାନେ ତାଦୃଶଂ ବଦେତ୍ ।

କେନ୍ଦ୍ର ତ୍ରିକୋଣରେ ରହିଥିଲେ ପାପମାନେ । ପଶୁପରି ମଇଥୁନ କରନ୍ତି ସେ ଜନେ । ମନ୍ଦ ପାପସଙ୍ଗେ କିମ୍ବା ଶୁକ୍ର ସଙ୍ଗରେ । ଥିଲେ ପଶୁପରି ମୈଥୁନ ସେ ନର କରେ ।

ମନ୍ଦେ ସୂର୍ଯ୍ୟେ ଯୁକ୍ତେ ଭୌମେ ପଶୁବନ୍ମୈଥୁନଂ ବଦେତ୍ ।
ଶନୌ ଜଳଗେ ଭୌମେ ବା ଯୁକ୍ତେ ତାଦୃଶମୈଥୁନଂ ।

ଶନି, ରବି; କୁଜ ଥିଲେ ଚତୁର୍ଥ ଗୃହରେ । ପଶୁପରି ମାନବ ଯେ ମଇଥୁନ କରେ । ଶନି ସପ୍ତମରେ କୁଜ ଥିଲେ ଚତୁର୍ଥରେ । ପଶୁତାଦୃଶ ମୈଥୁନ କରିଥାନ୍ତି ନରେ

ମନ୍ଦେନ ଭୃଗୁସଂଦୃଷ୍ଟେ ଭୌମକ୍ଷେତ୍ରଗତେଽଥବା ।
ଭୃଗୁଣା ସହିତେ ବାପି ଭଗଚୁମ୍ବନକୃଦ୍ଭବେତ୍ ।

ଶନିଯୁକ୍ତ ରାଶୀଶ୍ୱର ଶୁକ୍ରର ଦୃଷ୍ଟିରେ । ଶୁକ୍ର ସହିତରେ କିମ୍ବା ଶୁକ୍ରର ଗୃହରେ । ଥିଲେ ଯୋନି ଚୁମ୍ବନ ମାନବ ନିଶ୍ଚେ କରେ ।

ଏବଂ କୁଟୁମ୍ବନାଥେନ ଭଗଚୁମ୍ବନକୃଦ୍ଭବେତ୍ ।

ଶନିଯୁକ୍ତ ରାଶୀଶ୍ୱର ଦ୍ୱିତୀୟେଶ ଯୋଗେ । ପୂର୍ବପରି ଫଳ ନିର୍ଦ୍ଦେଶ କରିବ ବେଗେ ।

କର୍ମେଶେ ମନ୍ଦସଂଦୃଷ୍ଟେ ଭୌମକ୍ଷେତ୍ରଗତେଽଥବା ।
ଭୃଗୁଣା ସହିତେ ବାପି ଭଗଚୁମ୍ବନକୃଦ୍ଭବେତ୍ ।

ଦଶମାଧିପତି ଶନିର ଦୃଷ୍ଟିରେ ଥିଲେ । କିମ୍ବା ମଙ୍ଗଳଗୃହରେ ଯାଇଣ ରହିଲେ । ଶୁକ୍ର ସହିତରେ ଅବା ଯେବେ କରେ ବାସ । ଯେ ଭଗଚୁମ୍ବନ କରଇ ତହିଁ ଜ୍ୟୈ ଛଷ ଲଗ୍ନେଶ ବା କୁଟୁମ୍ବେଶ ନୀଚେ ଥିଲେ ବହୁ । ଭଗଚୁମ୍ବନକାରୀ ମାନବ ହୁଅଇ

କୁଜେ କୃଶସ୍ତନୀ ମନ୍ଦେ ଗୃହାଦୌ ଲମ୍ବିନସ୍ତନୀ ।
କଠିନୋର୍ଦ୍ଧ୍ୱକୁଚା ଜୀବେ ଶେଷୈସ୍ତୁ ଲୋତ୍ତୁଙ୍ଗସ୍ତନୀ ।

କୁଜ ସପ୍ତମେଶ ହେଲେ କ୍ଷୀଣସ୍ତନୀ ହେଇ । ଶନି କିମ୍ବା ରାହୁ ହେଲେ ଲମ୍ବସ୍ତନୀ କହୁ । ଗୁରୁ ହେଲେ କଠିନ ଉନ୍ନତ କୁଚ ତାର । ଅନ୍ୟଗ୍ରହରେ ଉଚ୍ଚସ୍ତନୀ ନାରୀବର ।

ଷଷ୍ଠେଶେନୈବେନ ସହିତେ ଚଳଲକ୍ଷଣକୁଷ୍ଠ ଭବେତ୍ ।
ଦାରେଶେ ପାପଗେହେ ତୁ ଶୁକ୍ରେ ବା ତାଦୃଶସ୍ତ୍ରୀ ।

ଶୁକ୍ର ସପ୍ତମେଶ ହୋଇ ହେଲେ ପାପଯୁତ । ଚଞ୍ଚଳ ପ୍ରକାର କୁଚ ତାର ଲକ୍ଷଣଯୁତ ॥
ଦାରେଶଙ୍କ ଗେହେ ପାପ କିମ୍ବା ଶୁଭ ଥିଲେ । ଚଞ୍ଚଳ କୁଚ ହୁଅଇ ଜ୍ୟୋତିଷ ବେଦେ ବୋଲେ

ଶୁଭଦ୍ୱୟେନ ସହିତେ ଦାରେଶେଽପି ତଥାବିଧେ ।
ସମସ୍ତନୀ ଭବେତ୍ ପତ୍ନୀ ପାପଯୋଗେଽନ୍ୟଥା ଭବେତ୍ ।

ଦୁଇ ଶୁଭଯୁକ୍ତ ହୋଇଥିଲେ ଦାରେଶ୍ୱର । ସମସ୍ତନୀ ହୁଏ ନାରୀ ଜଣବେ ବଗ୍ର । ପାପସଙ୍ଗେ ସପ୍ତମେଶ ଯେବେ କରେ ବାସ । ଦୁଇସ୍ତନ ଅସମାନ କହଇ ଜ୍ୟୋତିଷ ।

ଅତିସ୍ଥୂଳସ୍ତନୀ ପତ୍ନୀ ସଶୁକ୍ରେ ଦାରନାୟକେ ।
ଜଳଭେଦେ ଜଳର୍କ୍ଷସ୍ଥେ ଗୁରୁଣାପି ସମନ୍ୱିତେ ।

ଦାରେଶ୍ୱର ଶୁକ୍ରଯୁକ୍ତ ଯେବେ ଥାଏ ହୋଇ । ନାରୀ ଅତିସ୍ଥୂଳସ୍ତନୀ ନିଶ୍ଚୟ ହୁଅଇ ଚତୁର୍ଥେ ଜଳରାଶିରେ ଗୁରୁର ଦୃଷ୍ଟିରେ । ସପ୍ତମେଶ ଥିଲେ ଅତିସ୍ଥୂଳସ୍ତନୀ କରେ

ରବୌ ବା ଭୂମିପୁତ୍ରେ ବା ନଭମାନ୍ୟଗୃହସ୍ଥିତେ ।
ଦାରାଧିପେ ପାପଯୁକ୍ତେ ଭଗସ୍ଥୈର୍ଦୈର୍ଘ୍ୟଂ ବିନିର୍ଦ୍ଦିଶେତ୍ ।

ଦାରେଶ୍ୱର ପାପଗୃହାଦିରେ ଥିଲେ ବନ୍ଧ । ରବି ଭୌମ ବା ଗ୍ରହରେ ଯେବେ ଯୁକ୍ତ ହୋଇ । ଥାଏଁ ରବି କିମ୍ବା କୁଜ ଏମନ୍ତ ଯୋଗରେ । ଦୀର୍ଘଯୋନିଯୁକ୍ତା ନାରୀ ଘଟେ କପାଳରେ ।

ତଦୀଶୌ ଗୁରୁଶୁକ୍ରୌ ବା ଶୁଭାଂଶସଂସ୍ଥିତୌ ଯଦା ।
ସମଂ ଭଗଂ ଭବେତ୍ତସ୍ୟାଃ ପାପଯୁକ୍ତେ ତୁ ଦୀର୍ଘକଂ ।

ଗୁରୁ କିମ୍ବା ଶୁକ୍ର ହୋଇ ସପ୍ତମ ଈଶ୍ୱର । ଶୁଭରାଶି ଅଂଶେ ଥିଲେ ସମ ଭଗ ତାର ।
ପାପରାଶିଗତ କିମ୍ବା ହେଲେ ପାପଯୁତ । ଦୀର୍ଘଯୋନି କରଇ ନାରୀର ସେ ନିଶ୍ଚିତ ।

ଶନିଚନ୍ଦ୍ରବୁଧାନାଂ ମଧ୍ୟେ ଯସ୍ମିନ୍ନେକସ୍ମିନ୍ ମଦେଶ୍ୱରେ ।
ହ୍ରସ୍ୱଂ ଭଗଂ ସମାଦିଷ୍ଟଂ ସ୍ତ୍ରିୟମେକଂ ବିନିର୍ଦ୍ଦିଶେତ୍ ।

ଶନି ଚନ୍ଦ୍ର ବା ବୁଧ ହେଲେ ସପ୍ତମେଶ, । ହ୍ରସ୍ୱ ଭଗ ନାରୀ ବୋଲି କରନ୍ତି ନିର୍ଦ୍ଦେଶ । ନାରୀଜାତକରତ୍ନପ୍ରଭୃତିରେ ଏହାପରେ । ଲଗ୍ନାଦି ସପ୍ତରବୃନ୍ଦ ବିଲେଖିବ ଭଲ

ବିଳଗ୍ନେଶେ ଜଳର୍କ୍ଷସ୍ଥେ କାମଭେ ବା ତଥାବିଧେ ।
ଜଳର୍କ୍ଷେ ଦାରଭାବେ ବା ପୂର୍ଣ୍ଣଚନ୍ଦ୍ରସମନ୍ୱିତେ ।
ଚନ୍ଦ୍ରେ ଜଳର୍କ୍ଷେ ଦାରସ୍ଥେ ଜଳସ୍ଥଭୃଗୁସଂଯୁତେ ।
ଜଳର୍କ୍ଷସ୍ଥବିଦା ଦୃଷ୍ଟେ ସ୍ତ୍ରୀଗୁହ୍ୟସ୍ୟାର୍ଦ୍ରତା ଭବେତ୍ ।

କଳଙ୍କେଶ ବା ଭାବକ ହିମ୍ବା ଜାଗ୍ରାଣ୍ଡ । ଜଳରାଶିରେ ପୂର୍ଣ୍ଣଚନ୍ଦ୍ର ଦୃଷ୍ଟିରେ ଥିବ । ଅବା ଜଳରାଶିସ୍ଥ ଚନ୍ଦ୍ରର ସପ୍ତମରେ । ଜଳରାଶିଗତ ଶୁକ୍ର ବା ବୁଧଦୃଷ୍ଟିରେ ରହିଥିଲେ ନାରୀଭଗ ସଦା ଆର୍ଦ୍ର ରହେ ।

ଦ୍ୟୂନେଶେ ଶୋଭନେ ଦାରସ୍ଥେ ଜଳରାଶ୍ୟଂଶକେଽପି ବା ।
ଜଳସ୍ଥଗୁରୁସଂଦୃଷ୍ଟେ ସତତଂ ଭଗାର୍ଦ୍ରତା ଭବେତ୍ ।

ଜଳରାଶି ବା ନବାଂଶେ ପୂର୍ଣ୍ଣଶଶୀ ଥାଇ । ଜଳରାଶିଗତ ଗୁରୁଦୃଷ୍ଟି ପାଇ ରହି । ସପ୍ତମରେ ଥିଲେ, ଯୋନି ସଦା ଓଦା ରହଇ ।

ପରସ୍ପରାଂଶକେ ଶୁକ୍ରେ ଜଳରାଶିଗତେଽପି ବା ।
ଭଗନୂନା ସଂଯୁତେ ଚାପି ମୈଥୁନାଦେବ ଛାଦ୍ରଙ୍ଗଂ ।

ଶୁକ୍ର ପରମକ୍ଷେତ୍ରରେ ବା ଜଳରାଶିରେ । ରବି ସଙ୍ଗେ ଥିଲେ, ଓଦା ମୈଥୁନ-କାଳରେ ।

ଦାରେଶେ ଶୁଷ୍କରାଶିସ୍ଥେ ଦାରେ ବା ଶୁଷ୍କସଂଜ୍ଞକେ ।
ଶୁଷ୍କଗ୍ରହେଣ ସଂଯୁକ୍ତେ ଭଗାର୍ଦ୍ରଂ ଶୁଷ୍କମାଦିଶେତ୍ ।

ସପ୍ତମେଶ ଶୁଷ୍କରାଶିଗତ ଥିଲେ ହୋଇ । ସପ୍ତମରାଶି ବା ଯେବେ ନିର୍ଜଳ ହୁଅଇ, ଶୁଷ୍କଗ୍ରହ ଅବା ସପ୍ତମରେ ଥିଲେ ରହି, ଶୁଖିଲ ଯୋନି ନାରୀର ଏ ଯୋଗ ହୁଅଇ

ପାପକ୍ଷେତ୍ରେ ପାପମଧ୍ୟେ ଦାରେଶେଽପି ତଥାବିଧେ ।
ପାପଦୃଗ୍ଯୋଗମଧ୍ୟେ ତେ ଭଗାର୍ଦ୍ରଂ ଗ୍ରନ୍ଥିମାଦିଶେତ୍ ।

ପାପଗୃହରେ ବା ପାପଦ୍ୱୟର ମଧ୍ୟରେ । ପାପସଙ୍ଗେ ଅବା ପାପଦୃଷ୍ଟିର ଉପରେ । ସପ୍ତମେଶ ଥିଲେ, ଶୁଷ୍କ ଯୋନି କଷ୍ଟ କରେ ।

ସପ୍ତମେଶେ ବୁଧେ ଦୃଷ୍ଟେ ଚନ୍ଦ୍ରେଣ ଜଳସଂଯୁତେ ।
ଭୁକ୍ତେଶେନାପି ସଂଦୃଷ୍ଟେ ସ୍ୱପଦଧାନ୍ୟଭ୍ରଷ୍ଟଭବେତ୍ ।

ସପ୍ତମେଶ ହୋଇ ବୁଧ ହେଲେ ଜଳଚର । ଦ୍ୱିତୀୟେଶ ବା ଗୁରୁର ହେଲେ ଦୃଷ୍ଟିଗତ । ତାଲ ଦନ୍ତ ଦିଅ ନର ଭୁଞ୍ଜଇ ଜରଡ ।

ସପ୍ତମେଶେ ଗୁରୌ ଦୃଷ୍ଟେ ଶୋଭନାଂଶସମନ୍ୱିତେ ।
ସୌମ୍ୟାଂଶେ ସୌମ୍ୟସଂଦୃଷ୍ଟେ ସୂପଦଧ୍ୟାଜ୍ୟଭୁଗ୍ଭବେତ୍ ।

ଗୁରୁ ସପ୍ତମେଶ ହୋଇ ଶୁଭଅଂଶେ ଥିଲେ । ଦ୍ୱିତୀୟେଶର ଦୃଷ୍ଟିରେ ଅଥବା ରହିଲେ । ବୁଧନବାଂଶେ ବା ବୁଧଦୃଷ୍ଟିରେ ରହିଲେ । ଡାଲି ଦହି ଦୁଧ ଖାଦ୍ୟ ମାନବକୁ ମିଳେ ।

ଦାରସ୍ଥେ ଭୃଗୁସୂନେ ବା ପୂର୍ଣ୍ଣଚନ୍ଦ୍ରନିରୀକ୍ଷିତେ ।
ପାପୈର୍ନ ଯୁକ୍ତେ ଦୃଷ୍ଟେ ବା ସଦଧ୍ୟାଜ୍ୟୋପଭୁଗ୍ଭବେତ୍ ।

ପାପଯୁକ୍ତ କର୍ମ୍ମା ଦୃଷ୍ଟ ନୋହ ଭୃଗୁସୁତ । ପୂର୍ଣ୍ଣଚନ୍ଦ୍ରଦୃଷ୍ଟିରେ ସପ୍ତମେ ହେଲେ ସ୍ଥିତ । ସଦା ମାନବ ଭୁଞ୍ଜଇ ଡାଲି ଦଧି ଘୃତ ।

ଭବେୌ ବା ଭୂମିପୁତ୍ରେ ବା ସପ୍ତମେଶେ ଶୁଭେକ୍ଷିତେ ।

ଭୁକ୍ତିସ୍ଥାନଗତେ ବାପି ଜଦାରଦଧିସୂପଭୁକ୍ ।

ସପ୍ତମେଶ ହୋଇ ରବ କର୍ମ୍ମା ଭୂମିସୁତ । ଶୁଭଦୃଷ୍ଟିରେ ଦ୍ୱିତୀୟରେ ହୋଇଲେ ସ୍ଥିତ । କେବେ ନର ଭୁଞ୍ଜେ ଡାଲି ଦଧି ଘୃତ ।

ପାପେ ସପ୍ତମସ୍ଥେବଟ୍ଟେ ତଦ୍ୱାଂଶେ ପାପସଂଯୁତେ ।

ଚନ୍ଦ୍ରକ୍ଷେତ୍ର୍ୟଂଶକେ ବାପି ଘୃତସୂପାଦପ୍ଧାନଭୁକ୍ ।

ସପ୍ତମେଶ କର୍ମ୍ମା ଯବ ହେଲେ ପାପଯୁତ । ଚନ୍ଦ୍ରକ୍ଷେତ୍ର୍ୟଂଶେ ବା ସପ୍ତମେଶ ହେଲେ ସ୍ଥିତ । ଏ ଯୋଗେ ମାନବ ଭୁଞ୍ଜେ ସଦା ଶାଗସ୍ତତ ।

ଚନ୍ଦ୍ରେ ଗୁର୍ବୈ ବା ଦାରେଶେ ଜଳସ୍ତଶାଂଶସମ୍ଭବେ ।

ଜଳଗ୍ରହେଣ ବା ଦୃଷ୍ଟେ କ୍ଷୀରପାନାଦକ୍ସ୍ତଗବେତ୍ ।

ସପ୍ତମେଶ ଗୁରୁ କର୍ମ୍ମା ଶଶୀ ଯେବେ ହୋଇ । ଜଳରାଶି ବା ନବାଂଶେ କ୍ଷେତ୍ରେ ଥାଏ ରହି । କର୍ମ୍ମା ଜଳଗ୍ରହ ଦରଶନେ ଥିଲେ ରହି । ଏ ଯୋଗେ ମାନବ ସଦା ଦୁଧ ପିଇଥାଇ ।

ସପ୍ତମେଶସ୍ଥିତାଂଶେଶେ ଶୁଭଦୃଷ୍ଟିସମନ୍ୱିତେ ।

ଶୁଭଗ୍ରହାଂଶକେ ବାପି ଗୁଡ଼କ୍ଷୀରଦପାନଭୁକ୍ ।

ଯେବେ ସପ୍ତମେଶ ଥିବା ନବାଂଶଈଶ୍ୱର । ଶୁଭଦୃଷ୍ଟିରେ ତା ରହେ ଶୁଭ ନବାଂଶର । ଏ ଯୋଗେ ମାନବ ସଦା ଖାଏ ଗୁଡ଼କ୍ଷୀର ।

ବହବଃ ସପ୍ତମେ ପାପାଃ ଷଷ୍ଠେ ବା ରନ୍ଧ୍ରଭେ ଽପି ବା ।

ଚନ୍ଦ୍ରକ୍ଷେତ୍ର୍ୟଂଶସଂଯୁକ୍ତା ମୂତ୍ରକୃଚ୍ଛ୍ରଂ ବଦନ୍ତି ଶୋଭ୍ ।

ଷଷ୍ଠେ କର୍ମ୍ମା ସପ୍ତମରେ ଅବା ଅଷ୍ଟମରେ । ବହୁପାପ ଥିଲେ ଚନ୍ଦ୍ରକ୍ଷେତ୍ରି ଅଂଶଠାରେ । ମୂତ୍ରକୃଚ୍ଛ୍ର ବ୍ୟାଧି ଜନ୍ମେ ଜାତକ ଶରୀରେ ।

ଇତି ଶ୍ରୀ ସର୍ବାର୍ଥଚନ୍ତାମଣୌ ଷଷ୍ଠୋଽଧ୍ୟାୟଃ ।

---

ସପ୍ତମୋଽଧ୍ୟାୟଃ । ଅପୂର୍ବର୍ମଫଳବର୍ଗଃ ।

ମରଣଂ କ୍ଲୀବତମରଣଂ ଗୁହ୍ୟସ୍ଥାନାଂ ଚ ମରଣହେତୁଂ ଚ ।

ଅନ୍ୟସୁଖଂ ଭୁକ୍ତଦେଶଂ ପରଭବମପି ଚନ୍ତୟେତ୍ ପ୍ରାଜ୍ଞଃ ।

ଅଷ୍ଟମରୁ ଅପୂ: ମରଣ, ଯେ ଗୁହ୍ୟସ୍ଥାନ ମରଣ କାରଣ । ଅନ୍ୟସୁଖ, ଅଥ ଭବ ଦେଶ, ପରଜନ୍ମ, ଚନ୍ତିବ ସୁଜନ ।

ରନ୍ଧ୍ରେଶ୍ୱରେ ପାପଯୁତେଽନ୍ତ୍ୟଷଣ୍ଠଗେଽଲ୍ପାୟୁରସ୍ୟୈବ ବଦନ୍ତି ଷଷ୍ଠେ ।
ତଥାପି ଲଗ୍ନେଶ୍ୱରଯୋଗଜାତଃ ସ୍ୱଳ୍ପାୟୁରସ୍ୟୈବ ବଦନ୍ତି ସନ୍ତଃ ॥

ପାପଯୁକ୍ତ ଅଷ୍ଟମେଶ ବ୍ୟୟେ କିମ୍ବା ଷଷ୍ଠସ୍ଥାନରେ ରହିଲେ । ଅଳ୍ପାୟୁ ହୋଇ, ଅଧିକ ଅଳ୍ପାୟୁ ଲଗ୍ନେଶ୍ୱରଯୁକ୍ତ ଥିଲେ ।

ସ୍ୱକ୍ଷେତ୍ରସଂସ୍ଥେ ପତି ରନ୍ଧ୍ରନାଥେ ଦୀର୍ଘାୟୁଷଙ୍ଗର୍ଭମନୁଷ୍ୟୋ ମହାତ୍ମା ।
ମତେନ ବାୟୂଃ ପ୍ରବରୈର୍ଣୀସ୍ୱଂ ସ୍ୱକ୍ଷେତ୍ରମିତ୍ରେ ତଗୃହସ୍ଥିତେନ ।

ଯେବେ ଅଷ୍ଟମେଶ ସ୍ୱଗୃହେ ରହଇ ଦୀର୍ଘାୟୁ ହୁଏ ମାନବ । କିମ୍ବା ଶନି ଯେବେ ଉଚ୍ଚେ ବା ସ୍ୱଗୃହ ମିତ୍ରଗୃହେ ବା ରହିବ । ଦୀର୍ଘାୟୁ ମାନବ ହୁଅଇ, ଶନିଙ୍କୁ ଆୟୁମଧ ବିଚାରିବ ।

ରନ୍ଧ୍ରେଶ୍ୱରେଣାପି ବିଲଗ୍ନନାଥେ ଯୁତେ ରପୌ ବା ବ୍ୟୟରାଶିଯୁକ୍ତେ ।
ଷଷ୍ଠାନ୍ତ୍ୟଗେ ବା ଯଦିଲଗ୍ନଯୁକ୍ତେ ଦୀର୍ଘାୟୁରସ୍ୟୈବ ଶୁଭେକ୍ଷିତେ ବା ॥

ଅଷ୍ଟମେଶଯୁକ୍ତ ଲଗ୍ନନାଥ ଯେବେ ଷଷ୍ଠେ ବ୍ୟୟେ ବା ରହଇ । ଷଷ୍ଠେଶ ବ୍ୟୟେଶ ଲଗ୍ନରେ ରହିଲେ ଶୁଭଗ୍ରହଦୃଷ୍ଟ ହୋଇ । ଦୀର୍ଘାୟୁ ହବଇ ଜାଣିଥାଅ ନରେ ପୂର୍ଣ୍ଣଯୋଗ ଯେବେ ହୋଇ ।

କର୍ମେଶ୍ୱରେଣାପି ବିଚନ୍ଦ୍ରମାସ୍ୟଂ ଦୀର୍ଘଂ ସୁହୃତ୍ସ୍ୱୋଚ୍ଚଯୁତେନ ତେନ ।
କେନ୍ଦ୍ରସ୍ଥିତୈଃ କର୍ମବିଲଗ୍ନରନ୍ଧ୍ରନାଥୈସ୍ତଥୈବାୟୁରୁଦାହରନ୍ତି ।

ଉଚ୍ଚେ ବା ମିତ୍ରେ ବା ସ୍ୱଗୃହରେ ଥିଲେ ଦୀର୍ଘାୟୁ ହବେ ଚମେଶ । ଦଶମ, ଲଗ୍ନ, ଅଷ୍ଟମ ପତିମାନେ କେନ୍ଦ୍ରେ ଥିଲେ ଦୀର୍ଘାୟୁଷ ।

ପ୍ରୋକ୍ତଂ ଶୁଭୈର୍ଦ୍ୱ୍ୟମଗତୈସ୍ତ୍ରିଭିର୍ବା ସଲଗ୍ନକୈଃ କେନ୍ଦ୍ରଗତୈସ୍ତଥୈବ ।
* ସ୍ୱକ୍ଷେତ୍ରକୋଣାଦଗତୈର୍ବିଶେଷାତ୍ ବଦନ୍ତି ଦୀର୍ଘାୟୁରୁଦାରଚେଷ୍ଟାଃ ।

ଦୁଇ ତିନିଗ୍ରହ ଥିଲେ ଦଶମରେ କିମ୍ବା ଶନି ସଙ୍ଗତରେ । କେନ୍ଦ୍ରରେ ଥିଲେ ବା ନିଜଗୃହାଦିରେ ଥିଲେ ଦୀର୍ଘଆୟୁ ହବେ ।

କେନ୍ଦ୍ରାଧିପେ ବିଲଗ୍ନେଶେ ଗୁରୁଶୁକ୍ରସମନ୍ୱିତେ ।
ତାଭ୍ୟାଂ ନିରୀକ୍ଷିତେ ବାପି ଦୀର୍ଘମାୟୁର୍ବିନିର୍ଦ୍ଦିଶେତ୍ ।

ଗୁରୁଶୁକ୍ରଯୁକ୍ତ କିମ୍ବା ଦୃଷ୍ଟହୋଇ କେନ୍ଦ୍ରେ ଲଗ୍ନେଶ ରହିଲେ । ଦୀର୍ଘାୟୁ ହବଇ ଜାଣିଥାଅ ନରେ ଏ ଯୋଗେ ଜନମ ହେଲେ ।

ଚତୁରସ୍ତ୍ରେ ଶୁଭୈର୍ଯୁକ୍ତେ ଲଗ୍ନେଶେ ଶୁଭସଂଯୁତେ ।
ଗୁରୁଣାଦୃଷ୍ଟିସଂଯୋଗେ ପୂର୍ଣ୍ଣମାୟୁର୍ବିନିର୍ଦ୍ଦିଶେତ୍ ।

---

* ସ୍ୱକ୍ଷେତ୍ର କୋଣାଦ—ସ୍ୱଗୃହ ମୂଳତ୍ରିକୋଣ, ଉଚ୍ଚ ସ୍ୱଷଡ୍ବର୍ଗ ପ୍ରଭୃତି ଜାଣିବ ।

କେନ୍ଦ୍ରେ ଶୁଭ ଥିବ, ଲଗ୍ନେଶ୍ୱର ଯେବେ ଶୁଭସଙ୍ଗରେ ରହିବ । ଗୁରୁଦୃଷ୍ଟି ତାହାଠାରେ ରହିଥିଲେ ଦୀର୍ଘଆୟୁଷ କରିବ ।

ଷଷ୍ଠାଷ୍ଟମବ୍ୟୟଗତାଃ ପାପାଃ ଶୁଭାଃ କେନ୍ଦ୍ରତ୍ରିକୋଣଗାଃ ।
ଲଗ୍ନେଶେ ବଳସଂଯୁକ୍ତେ ପୂର୍ଣ୍ଣମାୟୁର୍ବିନିର୍ଦ୍ଦିଶେତ୍ ।

ତୃତୀୟ ଷଷ୍ଠ ଆୟରେ ପାପମାନେ, ଶୁଭେ କେନ୍ଦ୍ରତ୍ରିକୋଣରେ । ଲଗ୍ନେଶ୍ୱର ବଳଯୁକ୍ତ ଥିଲେ ହୋଇ ଦୀର୍ଘାୟୁ ଏହି ଯୋଗରେ ।

ଷଟ୍‌ସପ୍ତରନ୍ଧ୍ରଭାବେଷୁ ଶୁଭେଷୁ ସହିତେଷୁ ଚ ।
ତ୍ରିଷଡାୟେଷୁ ପାପେଷୁ ପୂର୍ଣ୍ଣମାୟୁର୍ବିନିର୍ଦ୍ଦିଶେତ୍ ।

ଷଷ୍ଠ ସପ୍ତମ ଅଷ୍ଟମେ ଶୁଭଥିବେ, ତୃତୀୟ ଷଷ୍ଠ ଆୟରେ । ଯେବେ ପାପ ଥିଲେ ମାନବ ଏଯୋଗେ ପୂର୍ଣ୍ଣାୟୁଷ ଲାଭ କରେ ।

ରନ୍ଧ୍ରାଧିପେ ବିଲଗ୍ନସ୍ଥେ ଗୁରୁସଂଯୁତେକ୍ଷିତେ ।
ଲଗ୍ନେଶେ କେନ୍ଦ୍ରଭାବେ ବା ଦୀର୍ଘମାୟୁର୍ବିନିର୍ଦ୍ଦିଶେତ୍ ।

ଗୁରୁଯୁକ୍ତ କିମ୍ବା ଦୃଷ୍ଟ ହୋଇ ଲଗ୍ନେ ଥିଲେ ଅଷ୍ଟମେଶ । ଲଗ୍ନେଶ୍ୱର ଅବା କେନ୍ଦ୍ରରେ ରହିଲେ କରଇ ଦୀର୍ଘ ଆୟୁଷ ।

ଉଚ୍ଚାଶ୍ରିତୈସ୍ତ୍ରିଭିଃ ଖେଟୈର୍ଲଗ୍ନେ ରନ୍ଧ୍ରେଶସଂଯୁତେ ।
ରନ୍ଧ୍ରେ ପାପବିହୀନେ ତୁ ଦୀର୍ଘମାୟୁର୍ବିନିର୍ଦ୍ଦିଶେତ୍ ।

ଯହିଁ ତହିଁ ତିନିଗ୍ରହ ଉଚ୍ଚେ ଥିବେ ରନ୍ଧ୍ରେଶ ଥିବ ଲଗ୍ନରେ । ପାପହୀନ ହେଲେ ଅଷ୍ଟମ ଭବନ ଦୀର୍ଘାୟୁ ହୁଅନ୍ତି ନରେ ।

ଉଚ୍ଚସ୍ଥିତୈସ୍ତ୍ରିଭିଃ ଖେଟୈଃ ସ୍ୱୋଚ୍ଚମିତ୍ରସ୍ୱଗେହଗୈଃ ।
ଲଗ୍ନେଶେ ବଳସଂଯୁକ୍ତେ ଦୀର୍ଘମାୟୁର୍ବିନିର୍ଦ୍ଦିଶେତ୍ ।

ଅଷ୍ଟମଭାବରେ ଉଚ୍ଚେ ଅବା ମିତ୍ରଗୃହେ ବା ନିଜଗୃହରେ । ତିନିଗ୍ରହ ଥିବେ, ଲଗ୍ନେଶ ବଳିଷ୍ଠ ହେଲେ, ଦୀର୍ଘାୟୁଷ କରେ ।

ପାରାବତାଦିଭାଗସ୍ଥାଃ ପାପାଃ ସର୍ବେ ଶୁଭାସ୍ତଥା ।
କେନ୍ଦ୍ରତ୍ରିକୋଣନିଳୟାଃ ପୂର୍ଣ୍ଣମାୟୁର୍ବିନିର୍ଦ୍ଦିଶେତ୍ ।

ପାରାବତାଂଶରେ ଥିଲେ ପାପମାନେ, କେନ୍ଦ୍ରତ୍ରିକୋଣଭବନେ । ଶୁଭଗ୍ରହେ ଥିଲେ ସମ୍ପୂର୍ଣ୍ଣ ଆୟୁଷ ଲାଭ କରିଥାନ୍ତି ଜନେ ।

ଷଷ୍ଠାଷ୍ଟମେ ବ୍ୟୟେ ପାପେ ଲଗ୍ନେଶେ ଦୁର୍ବଳେ ଯଦା ।
ଅଳ୍ପାୟୁର୍ଜନପତ୍ୟୋ ବା ଶୁଭଦୃଗ୍ଯୋଗବର୍ଜିତେ ।

ଷଷ୍ଠ ଅଷ୍ଟମ ଦ୍ୱାଦଶେ ପାପଥିଲେ ଦୁର୍ବଳ ଲଗ୍ନନାୟକ । ଶୁଭଦୃଷ୍ଟି ବା ସଂଯୋଗ ନ ଲଭିଲେ ଅଳ୍ପାୟୁ ବା ଅପୁତ୍ରିକ ।

ଚତୁଷ୍ଟୟଯୁଗତେ ପାପେ ଶୁଭଦୃଷ୍ଟିବିବର୍ଜିତେ ।
ବଳହୀନେ ବିଲଗ୍ନେଶେ ସ୍ୱଳ୍ପମାୟୁର୍ବିନିର୍ଦ୍ଦିଶେତ୍ ।

ଶୁଭଦୃଷ୍ଟିହୀନ ହୋଇ ପାପମାନେ ଯେବେ ରହନ୍ତି କେନ୍ଦ୍ରରେ । ଲଗ୍ନେଶର ହୀନବଳ ହୋଇଥିଲେ ଅଳପ ଆୟୁଷ କରେ ।

ବ୍ୟୟାର୍ଥୌ ପାପସଂଯୁକ୍ତୌ ଶୁଭଦୃଷ୍ଟିବିବର୍ଜିତୌ ।
କ୍ରୂରଷଷ୍ଠ୍ୟଂଶକେ ବାପି ସ୍ୱଳ୍ପମାୟୁର୍ବିନିର୍ଦ୍ଦିଶେତ୍ ।

ଦ୍ୱିତୀୟ ଦ୍ୱାଦଶ ଦୁହେଁ ପାପଯୁକ୍ତ ହେଲେ ଶୁଭଦୃଷ୍ଟି ହୀନ । ଉଭୟ ଭାବେଶ କ୍ରୂର ଷଷ୍ଠିଅଂଶେ ଥିଲେ ବା ଅଳ୍ପାୟୁ ଜନ ।

ଆୟୁର୍ଭେଦାସ୍ତ୍ରିଧା ପ୍ରୋକ୍ତାଃ ସ୍ୱଳ୍ପମଧ୍ୟାଧିକାୟୁଷଃ ।
ଦ୍ୱାତ୍ରିଂଶତ୍ପୂର୍ବମଳ୍ପାୟୁ ର୍ମଧ୍ୟମାୟୁର୍ବିନିର୍ଦ୍ଦିଶେତ୍ ।
ସପ୍ତତ୍ୟାଃ ପ୍ରାକ୍ ତତଃ ପର୍ଣ୍ଣମ ପୂରକ ବଦନ୍ତି ହି ।

ଅଳ୍ପ, ମଧ୍ୟ, ଦୀର୍ଘ ଭେଦରେ ତ୍ରିବିଧ ଆୟୁ ହୁଏ ପରିମାଣ । ବତିଶ ଯାଏ ଅଳ୍ପାୟୁ ବୋଲାଇ ପାଏ ସତୁରି ଯାଏ ମଧ୍ୟମ । ସତୁରିରୁ ଅଧିକରେ ଦୀର୍ଘ ଆୟୁ ଏହି କ୍ରମେ ଆୟୁ ଜାଣ

ଅଳ୍ପାୟୁର୍ଦ୍ଦିନନାଥସ୍ୟ ଶତ୍ରୁର୍ଲଗ୍ନାଧିପୋ ଯଦି ।
ସମତ୍ୱେ ମଧ୍ୟମାୟୁଃ ସ୍ୟାନ୍ ମିତ୍ରେ ଦୀର୍ଘାୟୁରାଦିଶେତ୍ ।

ରବିର ଶତ୍ରୁ ହୋଇଲେ ଲଗ୍ନେଶ୍ୱର ଅଳ୍ପଆୟୁଷ କରଇ । ସମ ହେଲେ ମଧ୍ୟମ ଆୟୁ କରଇ, ମିତ୍ରରେ ଦୀର୍ଘାୟୁ କହି ।

ବଳହୀନେ ବିଲଗ୍ନେଶେ ଜୀବେ କେନ୍ଦ୍ରତ୍ରିକୋଣଗେ ।
ଷଷ୍ଠାଷ୍ଟମବ୍ୟୟେ ପାପେ ମଧ୍ୟମାୟୁରୁଦାହୃତଂ ।

କେନ୍ଦ୍ରେ ବା ତ୍ରିକୋଣେ ଥିବ ବୃହସ୍ପତି ଦୁର୍ବଳ ହେବ ଲଗ୍ନେଶ ॥ ଷଷ୍ଠ ଅଷ୍ଟମ ବ୍ୟୟେ ପାପ ରହିଲେ କରଇ ମଧ୍ୟମାୟୁଷ ।

ଶୁଭେ କେନ୍ଦ୍ରତ୍ରିକୋଣସ୍ଥେ ଶନୌ ବଳସମନ୍ୱିତେ ।
ଷଷ୍ଠେ ବାପ୍ୟଷ୍ଟମେ ପାପେ ମଧ୍ୟମାୟୁରୁଦାହୃତଂ ।

ଶୁଭଗ୍ରହ କେନ୍ଦ୍ରେ ବା ତ୍ରିକୋଣେ ଥିବ ଶନି ହେବ ବଳଯୁତ । ଷଷ୍ଠ କିମ୍ବା ଅଷ୍ଟମରେ ପାପଥିଲେ କରଇ ମଧ୍ୟମାୟୁଷ ।

ଲଗ୍ନେ ତ୍ରିକୋଣେ କେନ୍ଦ୍ରେ ବା ମଧ୍ୟମାୟୁଶ୍ଚ ମିଶ୍ରିତେ ।

ଲଗ୍ନ ତ୍ରିକୋଣ କେନ୍ଦ୍ରରେ ଶୁଭପାପଗ୍ରହ ମିଶି ମିଶି ହୋଇ ରହିଲେ ମଧ୍ୟାୟୁ ହୁଅଇ ଜାତକ ଆଚାର୍ଯ୍ୟେ ଅଛନ୍ତି କହି ।

ଅଳ୍ପାୟୁର୍ଯୋଗଜାତାନାଂ ବିପତ୍ତପାକେ ମୃତିପ୍ରଦଃ ।
ମଧ୍ୟମେ ପ୍ରତ୍ୟରଦଶା ମୃତିଂ ଦଦ୍ୟାତ୍ ବିଶେଷତଃ ।

ବଧରେଣଦଶା କଷ୍ଟା ପୂର୍ଣ୍ଣାୟୁର୍ଯୋଗସଂଜ୍ଞକେ ।
ଯୋଗାୟୁରନ୍ତ କଷ୍ଟିତ୍ୟ ଜାତସ୍ୟୈବଂ ବଦେଦ୍ ବୁଧଃ ।

ବିପତ୍ତାର ଦଶା ମାରକ କରଇ ଅଳ୍ପାୟୁ ଯୋଗ ଜାତକୁ । ମଧ୍ୟମ ଆୟୁରେ ପ୍ରତ୍ୟରନକ୍ଷତ୍ରଦଶା କରଇ ମାରକୁ । ବଧନକ୍ଷତ୍ରଦଶା କରେ ମାରକ ପୂର୍ଣ୍ଣାୟୁ ଯୋଗଜନ୍ମାର । ଯୋଗଆୟୁ ଜାଣି ମାରକ ନକ୍ଷତ୍ର କର ପଣ୍ଡିତେ ଜାତକ ।

ଅୟୁର୍ବ୍ବ ଲଗ୍ନାଧିପତ୍ତ ବଳେନ ହୀନୌ ଧର୍ମସ୍ୱନୁବ୍ରଣେଷଯୁକ୍ତୌ ।
ଯୁଦ୍ଧେ ମୃତିଂ ତସ୍ୟ ବଦନ୍ତି ତଜ୍ଜ୍ଞାଃ ଶସ୍ତ୍ରେଣ ବା ଚନ୍ଦ୍ରଭଣଂ ବିଶେଷାତ୍ ।

ଲଗ୍ନେଶ ଆଉ ଅଷ୍ଟମେଶ ଦୁର୍ବଳହୋଇ, କ୍ରୂର ଷଷ୍ଠେଶ୍ୱର-ସଙ୍ଗେ ଯୁକ୍ତ-ହେଲେ ଯୁଦ୍ଧରେ ଅଥବା ଶସ୍ତ୍ରାଘାତେ ମୃତ୍ୟୁ କର ।

ରନ୍ଧ୍ରାଙ୍ଗନାଥୌ ଯଦି ବା ଋପୁସ୍ଥୌ ପାପ ଦୃଷ୍ଟୌ କେତୁଯୁତୌ ସଦନ୍ତୌ ।
ତଦ୍ଭୁକ୍ତିକାଳେ ତ୍ୱଥବାପି ପାକେ ଶସ୍ତ୍ରେଣ ଗ୍ରୈରୈର୍ମରଣଂ ପ୍ରଯାତି ।

ପାପ କେତୁ କିମ୍ବା ଶନି ଯୁକ୍ତହୋଇ ଅଷ୍ଟମେଶ ଲଗ୍ନନାଥ । ଦୁହେଁ ଷଷ୍ଠେ ଥିଲେ ତା ଦଶାଅନ୍ତରେ ଗ୍ରେଳଙ୍କରେ ଶସ୍ତ୍ରେ ନାଶ ।

ରନ୍ଧ୍ରାଙ୍ଗପୌ ବାହନନାଥଯୁକ୍ତୌ ତସ୍ମାନ୍ମୃତିଂ ତସ୍ୟ ବଦନ୍ତି ତଜ୍ଜ୍ଞାଃ ।
ମୃତିଂ ତ୍ୱଜୀର୍ଣ୍ଣାଦ୍ଗୁରୁସଂଯୁତୌ ତୌ ଦେହେଶଜୀବୌ ରିପୁଗାବଜୀର୍ଣ୍ଣାତ୍ ।

ରନ୍ଧ୍ରେଶ ଲଗ୍ନେଶ ଚତୁର୍ଥେଶ ଯୋଗେ ମରେ ବାହନ ହେତୁରେ । ରନ୍ଧ୍ରେଶ ଲଗ୍ନେଶ ଗୁରୁ ଏକଯୋଗେ ଅଜୀର୍ଣ୍ଣ ହେତୁରେ ମରେ । ଲଗ୍ନେଶ ଗୁରୁ ଏ ଦୁହେଁ ଷଷ୍ଠେ ଥିଲେ ମରନ୍ତି ସେ ଅଜୀର୍ଣ୍ଣରେ ।

ଲଗ୍ନେଶ୍ୱରେ ବାହନନାଥଯୁକ୍ତେ ବାଗୀଶ୍ୱରେଣାପି ଯୁତେ ତ୍ୱଜୀର୍ଣ୍ଣାତ୍ ।
ଦେହେଶ୍ୱରେ ବାହନବନ୍ଧୁନାଥାଦ୍ଧ୍ୟୁତେ ବା ମରଣଂ ତ୍ୱଜୀର୍ଣ୍ଣାତ୍ ॥

ଲଗ୍ନେଶ ଚତୁର୍ଥେଶ ଗୁରୁ ଏକତ୍ର ଯୋଗେ ଅଜୀର୍ଣ୍ଣରୁ ମରେ । ଲଗ୍ନେଶ ଚତୁର୍ଥେଶ ଦ୍ୱିତୀୟ ନାଥ ଯୋଗେ ମରେ ଅଜୀର୍ଣ୍ଣରେ ।

ରନ୍ଧ୍ରେଶଯୋଗାନ୍ମରଣଂ ଦଶାୟାଂ ମନ୍ଦର୍ଦ୍ଦଶାୟାମଥବା ବଦନ୍ତି ।
ପିତ୍ତାଦଭ୍ରବାଧିସଯୋଗଦୃଷ୍ଟ୍ୟା ପିତ୍ତାଦଦ୍ଧାନାଂ ମରଣଂ ତଥୈବ ।

ଅଷ୍ଟମେଶ ଦଶା ଅନ୍ତର୍ଦ୍ଦଶା ଯୋଗେ ଜନ୍ମେ ହୁଅଇ ମରଣ । ପିତ୍ତ ପ୍ରବୃତ୍ତି ଭାବରୁ ଯୋଗ ଦେଖି ତାହା ମରଣ କାରଣ ।

ଲୁକ୍ତ୍ୟଙ୍ଗପୌ ଜ୍ଞାନ୍ୱସୁତେନ ଯୁକ୍ତୌ ଦୁଃସ୍ଥାନଗୌ ବା ବିଷଭକ୍ଷଣେନ ।
ସର୍ପୋର୍ଦ୍ଧ୍ୱଜାଭ୍ୟାଂ ସହିତୌ ଚ ଦୁଃସ୍ଥାବୁଦ୍ବନ୍ଧନାତ୍ ତସ୍ୟ ମୃତିଂ ବଦନ୍ତି ॥

ଦ୍ୱିତୀୟେଶ ଲଗ୍ନେଶ ଦୁହେଁ ଶନିସଙ୍ଗେ ଅଶୁଭ ସ୍ଥାନରେ । ଥିଲେ ବିଷଖାଇ ମରଇ, କି ସର୍ପକେତୁ ସଙ୍ଗେ ଅଶୁଭକେ । ଥିଲେ ସେହି ଦୁହେଁ ଦଉଡ଼ି ଦେଇଣ ଆତ୍ମହତ୍ୟା ନର କରେ ।

ଷଷ୍ଠେଶ୍ୱରେ ଲଗ୍ନଯୁତେ ସସର୍ପ୍ପୌ କେତୌ ମୃଗାଦ୍ଭୀତିରୁଦାହରନ୍ତି ।
ଜୀବେନ ଯୁକ୍ତେ ଗଜଭୀତିରସ୍ୟ ଜାତସ୍ୟ ଚନ୍ଦ୍ରେଣ ଯୁତେଽଶ୍ୱଭୀତିଃ ।

ଶନି ଷଷ୍ଠପତି ହୋଇ ରାହୁକେତୁ ସଙ୍ଗେ ଥିଲେ ମୃଗଭୟ । ଗୁରୁସଙ୍ଗେ ଥିଲେ ହାତୀଭୟ ହୁଏ, ଚନ୍ଦ୍ର ସଙ୍ଗେ ଅଶ୍ୱଭୟ ।

ସୂର୍ଯ୍ୟାନ୍ୱିତେ ତାଦୃଶଲଗ୍ନନାଥେ ମୃଗାଶ୍ରଶୃଙ୍ଗାଚ୍ଛନକାସ୍ତ୍ରକ୍ଷୈ ମେ ।
ଷଷ୍ଠସ୍ଥିତେ ଭାନୁସୁତେଽପି ଚୈବଂ ବଦା ସ୍ୱତୁଙ୍ଗଂ ସ୍ୱଗୃହଂ ସ୍ୱଖେଟେ ।

ରବିସଙ୍ଗେ ଶୃଙ୍ଗୀ ପଶୁ ଭୟ, କୁଜସଙ୍ଗେ ଭୟ କୁକ୍କୁରରୁ । ତମ୍ଭା ଏକ ଶନି ଷଷ୍ଠରେ ରହିଲେ ଭୟ କୁକ୍କୁରହେତୁରୁ । ପୂର୍ବୋକ୍ତ ଗ୍ରହମାନେ ଯେବେ ସ୍ୱଗୃହେ ତମ୍ଭା ତୁଙ୍ଗରେ । ନ ଥାନ୍ତି ଏ ଫଳ ଘଟିଥାଏ ଇ ଜାଣିଥାଅ ସଜ୍ଜନରେ ।

ସୁଖେଶଲଗ୍ନେଶବଲଗ୍ନନାଥାସ୍ତ୍ରିକୋଣଗାଃ କେନ୍ଦ୍ରଗତାସ୍ତୁ ସର୍ବେ ।
ଭୁକ୍ତୌ ଯଦା ତତ୍ପ୍ରବପାକକାଳେ ପିତା ସହୈବାନୁମୃତଶ୍ଚ ମାତୁଃ ।

ଚତୁର୍ଥ ନବମ ଲଗ୍ନପତିମାନେ ଥିଲେ କେନ୍ଦ୍ରେ ବା ତ୍ରିକୋଣେ । ସେମାନଙ୍କ ଦଶା ଅନ୍ତରେ ବା ପିତା ମାତା ମରଣ ବଖାଣେ ।

ରନ୍ଧ୍ରେ ଶଶାଙ୍କେ ଫଣିନାଥଯୁକ୍ତେ ହୀନେ ତ୍ୱପସ୍ମାରଯୁତଃ ସମନ୍ଦେ ।
ତନଃସ୍ଥିତେ ହୀନବଳେ ଶଶାଙ୍କେ ପିଶାଚପୀଡ଼ା ଜଳଜା ଚ ପୀଡ଼ା ।

ରାହୁସଙ୍ଗେ ହୀନବଳଚନ୍ଦ୍ର ଅଷ୍ଟମରେ ଥିଲେ ଅପସ୍ମାର । ପିଶାଚ ବା ଜଳ— ପୀଡ଼ା ଜନ୍ମେ ତନୁ ଥିଲେ ସେ ଶନି ସଙ୍ଗର ।

ଭୌମାହ୍ୱମନ୍ଦାନ୍ୟତମେନ ଯୁକ୍ତ କ୍ଷୀଣେ ଶଶାଙ୍କେ ନିଧନସ୍ଥିତେଽପି ।
ଦୁଃସ୍ଥେ ତ୍ୱପସ୍ମାରଭୟାନ୍ୱିତଃ ସ୍ୟାତ୍ ପିଶାଚବାଧା ମୃତିଦା ଭବେଦ୍ୱା ।

କୁଜ, ରାହୁ କିମ୍ୱା ଶନି ସଙ୍ଗେ କ୍ଷୀଣଶଶୀ ଥିଲେ ଅଷ୍ଟମରେ । ଅଶୁଭଗୃହେ ବା ଥିଲେ ଅପସ୍ମାର ବା ପିଶାଚବାଧା ମାରେ ।

ରନ୍ଧ୍ରେ ସସର୍ପ୍ପୌ ଯଦି ବା ସକେତୌ ଚତୁର୍ଥକାତ୍ ପୀଡ଼ନମାହୁରସ୍ୟ ।
ରନ୍ଧ୍ରେଶ୍ୱରେଣାପି ଯୁତେ ତଥୈବଂ କ୍ରୂରାଦଷଷ୍ଠ୍ୟଂଶଯୁତେଽପି ସତ୍ୟଂ ।

ରାହୁକେତୁସଙ୍ଗେ ଶଶୀ ରନ୍ଧ୍ରେ ଥିଲେ ହୁଏ ଚତୁର୍ଥିକ ଜ୍ୱର । ଅଷ୍ଟମେଶ ତାହିଁ ସଙ୍ଗେ ରହିଥିଲେ ସମାନ ଫଳ ବିଚାର । ଏହି ଯୋଗେ ଶଶୀ କ୍ରୂରଷଷ୍ଟି- ଅଂଶେ ଥିଲେ ନିଶ୍ଚେ କରେ ଜ୍ୱର ।

ନୀଚସ୍ଥିତେ ବାସରନାଥକେ ବା ଷଷ୍ଠାଷ୍ଟମସ୍ଥେ ଯଦି ପାପଦୃଷ୍ଟେ ।
ରାଜ୍ଞଃ ପ୍ରକୋପାନ୍ମରଣଂ ପିତୁଶ୍ଚ ତତ୍ପୀଡ଼ିତସ୍ୟା ବିତ୍ତବିନାଶମେତି ।

ପାପଦୃଷ୍ଟ ରବି ନୀଚରେ ବା ଷଷ୍ଠ ଅଷ୍ଟମରେ ଥିଲେ ରହି । ରାଜକୋପୁଁ ପିତା ପ୍ରାଣନାଶ ହୁଏ, ସେହେତୁ ଧନ ନାଶଇ ।

### ଅଥ ଅରିଷ୍ଟଯୋଗାଃ ।

ଲଗ୍ନାଚ୍ଛିଦ୍ରେ କର୍ମଣି ଭୂମିପୁତ୍ରେ ପାପେକ୍ଷିତେ ମାତୁଲମୃତ୍ୟୁମାହୁଃ ।
ମନ୍ଦେନ ଯୁକ୍ତେ ଯଦି ସୁନମୃତ୍ୟୁଂ ଚନ୍ଦ୍ରେ ତୁ ଭଗ୍ନାତୃମୃତ୍ୟୁଂ ସପାପେ ॥

ନବମ ବା ଦଶମରେ ଭୂମିପୁତ୍ର ଥାଇ । ପାପ ତାହାକୁ ଦେଖିଲେ ମାତୁଳ ମରଇ । ତହିଁ ଶନି ଭୃଗୁଯୋଗେ ପଦବରେ ନାଶ । ତହିଁ ଭୃଗୁଚନ୍ଦ୍ର ଯୋଗେ ମାତାର ବିନାଶ

ପିତୃମୃତ୍ୟୁର୍ଦିବାସରନାଯୁକ୍ତେଽଙ୍କେ ନ ସଂଶୟଃ ପାପଦୃଷ୍ଟା ସମେତେ ।
ପାପଦ୍ୱୟେନାପି ଯୁତୌ ବିଲଗ୍ନଶଶାଙ୍କସୌ ମୃତ୍ୟୁମୁପୈତି ବାଳଃ ॥

ତହିଁ ଭୃଗୁ ରବି ସଙ୍ଗେ ପାପର ଦୃଷ୍ଟିରେ । ଥିଲେ ଶିଶୁର ପିତାର ମାରକ ସେ କରେ । ଲଗ୍ନଚନ୍ଦ୍ର ଦୁହେଁ ହେଲେ ପାପଗ୍ରହଯୁତ । ଏଯୋଗେ ଜାତବାଳକ ମରଇ ଅଦ୍ଭୁତ ।

ଗ୍ରସ୍ତେ ଶଶାଙ୍କେ * ପରିବେଶଯୁକ୍ତେ ପାପେକ୍ଷିତେ ବା ମରଣଂ ତୁ ସଦ୍ୟଃ ।
ତ୍ୱଷ୍ଟାର୍ଯ୍ୟତୋୟେଷୁ ବିଲଗ୍ନଚନ୍ଦ୍ରେ ଜାତଃ ସବର୍ଣ୍ଣସୁତମାତୁଳାଂଶ୍ଚ ॥

ଜନ୍ମକାଳରେ ଗ୍ରହଣ କିମ୍ବା ପରିବେଶ । ପାପଦୃଷ୍ଟ ହେଲେ ଚନ୍ଦ୍ର କରଇ ବିନାଶ । ଚିତ୍ରା ଉଃ ଫାଲ୍ଗୁନୀ, ପୂଃଷାଢ଼େ ଲଗ୍ନ ଶଶୀ । ଥିଲେ ଝପେ ମାତା ପକ୍ଷ ମାତୁଳ ବିନାଶି ।

ପାଦାନ୍ତଶେଷେଣାପି ଭବନ୍ତି ତାଂସ୍ତୁ ଶୁଭୈଶ୍ଚ ଦୃଷ୍ଟେ ସହିତେ ନ ଦୋଷଃ ।
ଲଗ୍ନେ ବ୍ୟୟେ ବା ଯଦି ମନ୍ଦଭୌମୌ ଫଣୀନ୍ଦ୍ରଯୁକ୍ତୌ ପିତୃଭସ୍ତ୍ୟପାସ୍ତଃ ।

ପଦଭେଦ ଥିଲେ ମଧ୍ୟ ଏ ପୂର୍ବଫଳ । ଶୁଭଯୁକ୍ତ ବା ଦୃଷ୍ଟରେ ଏ ଶୁଭଫଳ । ଲଗ୍ନେ ବା ନବମେ ରାହୁ ଶନି କୁଜ ମିଶି । ଥିଲେ ପିତାର ବିପଦ୍ ବାଢ଼ଇ ସେ ଆସି ।

ପାପେକ୍ଷିତେ ଭୂମିସୁତେ ବିଲଗ୍ନେ ଜାତଃ ସ ମୃତ୍ୟୁଂ ସମୁପୈତି ଚନ୍ଦ୍ରେ ।
ସୋଽଷ୍ଟେ ଧର୍ମସୂନୁଯୁତେ ସପାପେ ପାପେକ୍ଷିତେ ସୋଦରନାଶମାହୁଃ ॥

ସପ୍ତମେ ବା ଅଷ୍ଟମରେ ପାପର ଦୃଷ୍ଟିରେ । କୁଜ ଥିଲେ ବାଲ୍ୟର ଲେଢ଼ଷ୍ଟେ ମାର୍କ କରେ ପାପଯୁକ୍ତ କିମ୍ବା ଦୃଷ୍ଟ ହୋଇ ଧର୍ମସୁତ । ତୃତୀୟରେ ଥିଲେ ଭାଇକୁ କରଇ ହତ ।

ଅସ୍ତେ ଶଶାଙ୍କେ ଯଦି ମାତୃମୃତ୍ୟୁଂ ପାପେକ୍ଷିତେ ପାପସମାଗତେ ବା ।
ସ୍ୱର୍ଭାନୌ ପିତୃମୃତ୍ୟୁମୁଦାହରନ୍ତି ମନ୍ଦ ବର୍ଗକେ ସହିତେ ଶୁଭସ୍ୟ ॥

ଜନମକାଳରେ ସପ୍ତମରେ ଥିଲେ ଶଶୀ । ପାପଯୁକ୍ତ ଦୃଷ୍ଟ ହେଲେ ମାତାକୁ ବିନାଶି । ରବି ସପ୍ତମରେ ଥିଲେ ପିତାକୁ ନାଶଇ । ଶନି କୁଜ ଶୁକ୍ର ଥିଲେ ପୁତ୍ର ବିନାଶଇ ।

---

* ପରିବେଶ—ଚନ୍ଦ୍ରମଣ୍ଡଳ ଚାରିପାଖରେ ଯେଉଁ ଗୋଲାକାର ଗୋଟିଏ ମଣ୍ଡଳ ସମୟ୨ରେ ଦେଖାଯାଏ । ଏହାକୁ ଧୂଳି ମଣ୍ଡଳ ବୋଲି କହି ଥାଆନ୍ତି ।

ତୃତୀୟଷଷ୍ଠସ୍ଥିତଖେଚରେନ୍ଦ୍ରୈଃ ପାପଗ୍ରହେ ଲଗ୍ନଗତେଽଷ୍ଟ ସୌମ୍ୟୈଃ ।
କ୍ଷିଣେନ୍ଦୁଶିର୍ବା କୁମୁଦାସ୍ତବନ୍ଧୋ ଚତୁର୍ଥରନ୍ଧ୍ରସ୍ଥିତପାପଖେଟୈଃ ।

ଦ୍ୱାଦଶରେ ଶୁଭମାନେ, ତୃତୀୟ ଷଷ୍ଠରେ । ପାପମାନେ ଥିଲେ, ବାଳକ ନଷ୍ଟ ହୁଏ । ପାପଗ୍ରହସଙ୍ଗେ ଚତୁର୍ଥେ ବା ଅଷ୍ଟମରେ । ଚନ୍ଦ୍ର ଥିଲେ ବାଳକର ମୃତ୍ୟୁ ନିଶ୍ଚେ କରେ ।

ଲଗ୍ନେଽର୍କଚନ୍ଦ୍ରୌ ବ୍ୟୟଗାସ୍ତୁ ପାପାଃ କ୍ଷିଣେନ୍ଦୁଭିଂ ଶୋଭନଦୃଷ୍ଟ୍ୟଭାବେ ।
ଅସ୍ତେ ରବୌ ଚନ୍ଦ୍ରଯୁତେ ବିଲଗ୍ନେ ପାପାନ୍ୱିତେ ଚାସ୍ତୁ ତମୃତ୍ୟୁମାହୁଃ ॥

ଶୁଭଦୃଷ୍ଟିହୀନ ରବିଚନ୍ଦ୍ର ଲଗ୍ନେ ଥିବେ । ପାପମାନେ ବ୍ୟୟେ ଥିଲେ ଶିଶୁକୁ ମାରିବେ । ପାପଯୁତ ଚନ୍ଦ୍ର ଯେବେ ଲଗ୍ନରେ ରହଇ । ରବି ସପ୍ତମରେ ଥିଲେ ଶିଶୁକୁ ମାରଇ ।

ଧନେଶଚନ୍ଦ୍ରୌ ବ୍ୟୟଗୌ ତଦାନ୍ଧାମନ୍ଧୋ ଭବେତ୍ ସୌମ୍ୟଦୃଶା ବିହୀନୌ ।
ଯୁକ୍ତେ ତୟୋରନ୍ୟତରେ ଚ ରନ୍ଧ୍ରେ କାଣୋ ଭବେତ୍ ସୌମ୍ୟଦୃଶା ବିହୀନେ ।

ଶୁଭଦୃଷ୍ଟିହୀନ ହୋଇ ରବି ଚନ୍ଦ୍ର ଦୁଇ । ଦ୍ୱାଦଶରେ ଥିଲେ, ଅନ୍ଧ ବାଳକ ହୁଅଇ । ଏ ଦୁଇରୁ ଏକ ଥିଲେ ଦ୍ୱାଦଶ ଗୃହରେ । ଶୁଭଦୃଷ୍ଟିରେ ନ ଥିଲେ କଣା ନିଶ୍ଚେ କରେ ।

ଧନେଶଚନ୍ଦ୍ରୌ ବ୍ୟୟଗୌ ତଦୀଶେ ଲଗ୍ନସ୍ଥିତେ ଦେହବିନାଶମାହୁଃ ।
ସୁରେଶ୍ୱରେ ରନ୍ଧ୍ରଗତେ ବ୍ୟୟେ ବା ପାପାନ୍ୱିତେ ପାପଦୃଶା ସମେତେ ।

ରବିଚନ୍ଦ୍ର ଦୁହେଁ ଥିବେ ଦ୍ୱାଦଶଗୃହରେ । ବ୍ୟୟେଶ ଲଗ୍ନରେ ଥିଲେ ବାଳକକୁ ମାରେ । ପାପଯୁକ୍ତ କିମ୍ବା ଦୃଷ୍ଟ ହୋଇ ବୃହସ୍ପତି । ଦ୍ୱାଦଶେ ବା ଅଷ୍ଟମରେ ଯେବେ କରେ ସ୍ଥିତି । (ବାଳକର ମୃତ୍ୟୁ ହୁଏ)

ଲଗ୍ନାଧିପେ ପୂର୍ଣ୍ଣବଲେ ସୁଖେଶଭାଗ୍ୟେଶ୍ୱରୌ ନାଶଗତୌ ବିହୀନୌ ।
ଜାତସ୍ୟ ଜନ୍ମାବସରେ ତଦାନୀଂ ପିତୃଷ୍ଟ ମାତୁଶ୍ଚ ଧନଂ ବଦନ୍ତି ।

ଦୁର୍ବଳ ହୋଇଣ ଚତୁର୍ଥ ନବମେଶ୍ୱର । ଦୁହେଁ ଅଷ୍ଟମରେ ଥିବେ, ଲଗ୍ନର ଈଶ୍ୱର । ସମ୍ପୂର୍ଣ୍ଣ ବଳସ୍ଥ ହେଲେ ଜନ୍ମ ସମୟ ରେ । ପିତା ମାତା ଦୁହିଙ୍କର ମାରକ ସେ କରେ ।

ଦୁଃସ୍ଥେ ତୃତୀୟାଧିପତୌ ସଚନ୍ଦ୍ରେ ସ୍ତନ୍ୟଂ ପରସ୍ତ୍ରୀଷୁ ପିବେଚ୍ଚ ବାଳଃ ।
ତାତେଶତତ୍କାରକଖେଚରେନ୍ଦ୍ରୌ ଦୁଃସ୍ଥୌ ତୟୋଃ ପୂର୍ବସୁଖଂ ନ କୁର୍ଯ୍ୟାତ୍ ॥

ଚନ୍ଦ୍ରସଙ୍ଗେ ତୃତୀୟେଶ ଥିଲେ କୁସ୍ଥାନରେ । ପରନାରୀଠାରୁ ଶିଶୁ ଦୁଗ୍ଧପାନ କରେ । ଦଶମେଶ ଅବା ପିତୃକାରକ ଖେଚର । କୁସ୍ଥାନରେ ଥିଲେ ପୂର୍ବସୁଖ ନାହିଁ ତାର ।

କେନ୍ଦ୍ରତ୍ରିକୋଣେ ଯଦି ତୌ ବଳାଢ୍ୟୌ ବଦେତ୍ ତୟୋଃ ପୂର୍ବସୁଖଂ ଦ୍ୱିଜାଗ୍ରାଃ ।
ପିତୁର୍ଦ୍ଧଶାୟାଂ ମରଣଂ ବଦନ୍ତି ଭାଗ୍ୟେଶସୂର୍ଯ୍ୟାର୍କସୁତାଃ ଯଦି ସ୍ଥାଃ ।

କେନ୍ଦ୍ରେ ବା ତ୍ରିକୋଣେ ଥିଲେ ସେହି ଗ୍ରହ ଦୁହେଁ । ଇଚ୍ଛା ଅନୁରୂପ ଧନସୁଖ ଲାଭ ହୁଏ । ନବମେଶ, ରବି, ଶନି ଏମାନେ ଷଷ୍ଠରେ । ଥିଲେ ରାତିରେ ଜନ୍ମିଲେ ତାର ପିତା ମରେ ।

ଷଷ୍ଠେଶ୍ୱରେଣାପି ଯୁତାସ୍ତଥୈବ ଚନ୍ଦ୍ରେଣ ହୀନାସ୍ତୁ ଦିବା ମୃତିଃ ସ୍ୟାତ୍ ।

ସୂର୍ଯ୍ୟସ୍ଥିତୈଃ ଖେଚରନାୟକୈର୍ବା ମାତୁର୍ମୃତିଃ ସ୍ୟାଦୟନେ ତୁ ଭର୍ତ୍ତ୍ରିନ୍ ।

ସେହିଗ୍ରହମାନେ ଷଷ୍ଠେଶ୍ୱରଯୁକ୍ତ ଥିଲେ । ପିତୃମାରକ କରଇ ଦିବସେ ଜନ୍ମିଲେ । ଚନ୍ଦ୍ର ଷଷ୍ଠେଶ୍ୱର ହେଲେ ନୁହଇ ଏଫଳ । * କେହି ବା ଅର୍ଥ କରନ୍ତି ପିତୃମୃତ୍ୟୁକାଳ । ଯେତେ ଉଚ୍ଚଗ୍ରହ ଥିଲେ ଚତୁର୍ଥଗୃହରେ । ମାତାର ମୃତ୍ୟୁ ହୁଏ ସେ ଅୟନମଧ୍ୟରେ ।

(ନୋଚେତ୍ ତଦ୍ୱୀଶାନ୍ୱିତସ୍ୱର୍ଣ୍ଣିକାଲେ ମାତୁର୍ମୃତିଃ ସ୍ୟାଦୟନେ ଚ ଭର୍ତ୍ତ୍ରିନ୍ ।)

( ଦ୍ୱିବ୍ୟାଦିଯୋଗାଦୟନଂହି ତସ୍ୟ ବ୍ୟତ୍ୟାସତୋ ବା ପ୍ରବଦନ୍ତି ସନ୍ତଃ )

* * * * * * *

ନ ଚେଶ ଚନ୍ଦ୍ରେ ବା ପିତୃଭ୍ରାତୃନାଥେ ଦୁଃସ୍ଥିତସ୍ତଜ୍ଜନକୋଽପି ବାଚ୍ୟଃ ।

ସ୍ଥିରୋଭୟସ୍ଥେ ପିତୃଭାବନାଥେ ସମୀପସ୍ଥସ୍ତଜ୍ଜନକଃ ସ୍ଥିତଃ ସ୍ୟାତ୍ ॥

ଦଶମେଶ ଚରରାଶିରେ ବା ଅଷ୍ଟମରେ । ଥିଲେ ଜାତକର ପିତା ମରଇ ଦୂରରେ । ସ୍ଥିର ବା ଦ୍ୱିସ୍ୱଭାବରେ ଥିଲେ ଦଶମେଶ । ପିତା ପାଖରେ ପିତାର ହୁଅଇ ବିନାଶ ।

କେନ୍ଦ୍ରେ ଚରେ ଋକ୍ଷେ ଯଦି ବା ଶଶାଙ୍କେ ସୂର୍ଯ୍ୟତା ଦହେତ୍ ତତ୍ପିତରୌ ନ ତସ୍ୟ ।

ଦ୍ୱିଦେହରାଶୌ ଯଦି ତୌ ଚ କେନ୍ଦ୍ରେ ତୟୋର୍ମୃତିର୍ବା ଦହନେ ବିକାଲଂ ।

ଚରରାଶିରେ କେନ୍ଦ୍ରରେ ରବି ଅବା ଶଶୀ—ଥିଲେ ସେ ନ ଦହେ ମଲେ ପିତା ମାତାଙ୍କୁ ଟି । ଦ୍ୱିସ୍ୱଭାବେ କେନ୍ଦ୍ରରେ ଥିଲେ ଶଶୀ ବା ରବି । ବହ୍ନିମେ ଦହଇ ପିତା ମାତାଙ୍କୁ ସେ ଶବ ।

ବଲେନ ଯୁକ୍ତେ ପିତୃଭାବନାଥେ ଶଶାଙ୍କଦେହେଶଚତୁର୍ଥନାଥଃ ।

ବଲେନ ହୀନା ଯଦି ତଜ୍ଜନନ୍ୟାଂ ଗାତ୍ରଂ ବିପତ୍ତିଂ ସମୁଦାହରନ୍ତି ।

ଚନ୍ଦ୍ର, ଲଗ୍ନପତି, ଚତୁର୍ଥେଶ, ବଳହୀନ । ଦଶମାଧୀଶ ହୋଇଲେ ବଳରେ ସମ୍ପୂର୍ଣ୍ଣ । ମାତାକୁ ହୋଇ ବିପତ୍ତି ସହଇଟି ଜାଣ ।

---

* କାହାରି ମତରେ ନବମେଶ, ରବି ଓ ଶନି ଏମାନେ ଷଷ୍ଠରେ ଥିଲେ ପିତାର ଦିନରେ ମୃତ୍ୟୁହୁଏ । ଏହି ଅମରେ ଅର୍ଥ କରନ୍ତି କିନ୍ତୁ ଏହି ଅର୍ଥ ଅରିଷ୍ଟଯୋଗର କୌଣସି ପୋଷକ ହେଉନାହିଁ । ଏହି ଯୋଗ ହେଲେ ଯେ ରାତ୍ରି କିମ୍ବା ଦିନରେ ମରିଣ ଏରୂପ ପ୍ରମାଣ ମଧ୍ୟ ବାହୁଲ୍ୟ ପରି ।

ରନ୍ଧ୍ରେ ତୁ ପାପବାହୁଲ୍ୟେ ଗୁହ୍ୟରୋଗଂ ବିନିର୍ଦ୍ଦିଶେତ୍ ।
ଶୁଭଗ୍ରହେଣ ସଂଦୃଷ୍ଟେ ନ ଦୋଷସ୍ତତ୍ର କୀର୍ତ୍ତିତଃ ॥

ବହୁପାପ ଥିଲେ ଅଷ୍ଟମରେ ଗୁହ୍ୟରୋଗ ହୁଏ, ଶୁଭଦୃଷ୍ଟି ତହିଁ ଥିଲେ ହୁଏ ଭଲ ।

ରନ୍ଧ୍ରେ ଶୁଭେକ୍ଷିତେ ତେନ ସଂଯୁତେ ଚେଦ୍ଧ୍ରୁବଂ ଭବେତ୍ ।
ସୁଖାନ୍ତଂ ପାପସମ୍ବନ୍ଧେ ମୃଦ୍ୱନ୍ତଂ ଶୁଭସଂଯୁତେ ।

ଶୁଭଯୁକ୍ତ କିମ୍ବା ଦୃଷ୍ଟ ହୋଇଲେ ଅଷ୍ଟମ । ସୁଖୀ ହବେ, ନ ହୁଅଇ ଅରିଷ୍ଟ ସଙ୍ଗମ । ପାପ ଅଷ୍ଟମରେ ଥିଲେ ମିଳେ ମୋଟା ଭାତ । ଶୁଭ ଥିଲେ ସରୁ ଅନ୍ନ ମିଳଇ ତୁରିତ ।

ରନ୍ଧ୍ରେଶେ ପାପସଂଯୁକ୍ତେ ପାପଦୃଷ୍ଟେ ତଦନ୍ତରେ ।
ପାପକ୍ଷେତ୍ରେଽଥବା ରନ୍ଧ୍ରେ ଜାତଃ ପରଭବାନ୍ୱିତଃ ।

ଅଷ୍ଟମେଶ ପାପଯୁତ କିମ୍ବା ପାପଦୃଷ୍ଟି । ପାପଦୁଇର ମଧ୍ୟରେ କିମ୍ବା ହୋଇଲେ ସ୍ଥିତ । ଅବା ଅଷ୍ଟମ ହୋଇଲେ ପାପର ଭବନ । ଏ ଯୋଗେ ଜାତକ ସହେ ନାନା ଅପମାନ

ଶୁଭଗ୍ରହାଣାଂ ସମ୍ବନ୍ଧେ ରନ୍ଧ୍ରେ ପରଭବୋ ନହି ।
ଚରେ ରନ୍ଧ୍ରେ ମୃତିର୍ଦୂରେ ତଦ୍ୱାଂଶେ ଚରରାଶିଗେ ।

ଶୁଭଯୋଗାଦି ସମ୍ବନ୍ଧ ଲଭିଲେ ଅଷ୍ଟମ । ଅପମାନିତ ନୁହଇ ଜାତକର କର୍ମ । ଚର ରାଶିରେ ଅଷ୍ଟମ କିମ୍ବା ଅଷ୍ଟମେଶ । ଚରେ ଥିଲେ ବିଦେଶେ ଜାତକ ହୁଏ ନାଶ ।

ଶନୌ ବା ଚରରାଶିସ୍ଥେ ତଦଂଶସ୍ଥେ ତଥା ଭବେତ୍ ।
ସ୍ଥିରେ ରନ୍ଧ୍ରେ ତଦୀଶେଽପି ସ୍ଥିରରାଶ୍ୟୋ ତଦଂଶକେ ।

ଶନି ଚରରାଶିରେ ବା ଚରନବାଂଶରେ । ଥିଲେ ଜାତକ ବିଦେଶେ ଯାଇ ନଷ୍ଟ ମରେ । ଅଷ୍ଟମ ସ୍ଥିରରେ କିମ୍ବା ଅଷ୍ଟମ ଈଶ୍ୱର । ସ୍ଥିରରାଶି ବା ନବାଂଶେ ଘରେ ମରେ ନର ।

ଶନୌ ବା ସ୍ଥିରରାଶ୍ୟଂଶେ ସ୍ୱଗୃହେ ମରଣଂ ଭବେତ୍ ।
ରନ୍ଧ୍ରେ ଦ୍ୱିଦେହରାଶ୍ୟାଦୌ ମାର୍ଗେ ମରଣମାଦିଶେତ୍ ।

ସ୍ଥିରରାଶି ବା ନବାଂଶେ ଥିଲେ ଶନୈଶ୍ଚର । ଗୃହରେ ମରଣ କହନ୍ତି ହୁଏ ଜାତକର । ଏହିପରି ଯୋଗ ଦ୍ୱିସ୍ୱଭାବେ ଥିଲେ ହୋଇ । ମାର୍ଗରେ ଜାତକ ମୃତ୍ୟୁ ନିଶ୍ଚୟ ଲଭଇ

ଇତ୍ୟଷ୍ଟମଭାବଫଳଂ

ଅଥ ନବମଭାବଫଳବିଚାରଃ ।

ଶୁଭଭବନାଦ୍ଗୁରୁଭାଗ୍ୟଂ ପିତୃପୌତ୍ରଦୟାତପଃପ୍ରବୃତ୍ତିଃ ।
ତୀର୍ଥସ୍ନାନଂ ସ୍ୱାନ୍ତଂ ସହଭୋକ୍ତ୍ରନ୍ ଦାନଯୋଗମପି ବଦ୍ୟାତ୍ ।

ଗୁରୁ, ଭାଗ୍ୟ, ଜନକ, ନାତି; ଦୟା ଯେ ତପ ଶୁଭ ତୀର୍ଥଦେଶ ମାନସ । ଦାନ ଯୋଗ ସାଧନ ସଙ୍ଗେ ଖାଇବା ଜନ ନବମୁଁ ଏତେକ ପ୍ରକାଶ ॥

ଚନ୍ଦ୍ରମାଧ୍ୟା ଗୁରୁସ୍ୱାମିପିତୃଭାଗ୍ୟାଦମାତୁଳାଃ ।
ନବମେ ସ୍ୱାମିସୌମ୍ୟାଢ୍ୟେ ଶୁଭା ଏତେଽନ୍ୟଥାଽଶୁଭାଃ ।

ଗୁରୁ, (ସ୍ୱାମୀ) ଆଚାର୍ଯ୍ୟ ପିତା ଭାଗ୍ୟ ମାତୁଳବଥ ଏତେକ ନବମୁଁ ବିଚାର । ସ୍ୱାମୀ ଶୁଭସଂଯୁତ ହୋଇଲେ ନବମ ଭ ସକଳ ଫଳ ଶୁଭ ତାର ।

ଚନ୍ଦ୍ରେ ସପାପେ ଯଦି ଧର୍ମସଂସ୍ଥେ ଭୃଗୋଃ ସୁତେ ବା ଗୁରୁଦାରଗାମୀ ।
ଧର୍ମାଧିପେ ଦ୍ୱାଦଶଖେଚରେଣ ଯୁତେ ସପାପେ ଗୁରୁଦାରଗାମୀ ।

ଚନ୍ଦ୍ର ବା ଭୃଗୁସୁତ ନବମେ ପାପଯୁତ ହେଲେ, ଗୁରୁପତ୍ନୀ ହରଇ । ପାପଯୁକ୍ତ ଧର୍ମେଶ ଚନ୍ଦ୍ର ବା ଭୃଗୁଶିଷ୍ୟ ସଙ୍ଗେ ଥିଲେ ଏହି ଫଳଇ ॥

ଧର୍ମାଧିପସ୍ଥାଂଶପତୌ ତଥୈବ ଯୁକ୍ତେ ତଦା ତାଦୃଶଦାରଗାମୀ ।
ଧର୍ମାଧିପେ ନୀଚଗତେ ତଦଂଶେ ଶୁକ୍ରେଣ ଯୁକ୍ତେ ଗୁରୁଦାରଗାମୀ ।

ଯେ ନବାଂଶେ ଧର୍ମପତି ତା ପତିର ପୂର୍ବମତ ଯୋଗଦେଖି କହ ପୂର୍ବ ଫଳ । ନୀଚେ ଥିବ ଧର୍ମପତି ତା ନବାଂଶେ ଶୁକ୍ର ସ୍ଥିତି କଲେ, ଗୁରୁ-ନାରୀସଙ୍ଗେ ମେଳ ।

କ୍ଷୀଣେ ଶଶାଙ୍କେ ତ୍ୱଥବା ତଦଂଶେ ଶୁକ୍ରେ ତଥୈବଂ ଗୁରୁଦାରଗାମୀ ।

ଶୁକ୍ର ଅବା କ୍ଷୀଣଶଶୀ ଧର୍ମେଶ ନବାଂଶେ ବସିଥିଲେ ଗୁରୁ ନାରୀ ହରେ ନର ।

ଧର୍ମେଶ୍ୱରେ ସୌମ୍ୟଯୁତେ ତଦଂଶେ ବୈଶେଷିକାଂଶେ ତ୍ୱଥବା ତଦୀଶେ
କ୍ରୂରାଦିଷଷ୍ଟ୍ୟଂଶବିବର୍ଜିତେ ସ୍ୟାଜ୍ଜାତଃ ସୁଧର୍ମେ ଦୃଢ଼ବୁଦ୍ଧିଯୁକ୍ତଃ ।

ଧର୍ମେଶ୍ୱର ଶୁଭଯୁତ ଶୁଭନବାଂଶେ ବା ସ୍ଥିତ ବୈଶେଷିକାଂଶେ ବା ଥିଲେ ବଳି କ୍ରୂର ଷଷ୍ଟିଅଂଶ ଯୁତ ନୋହିଥିଲେ ଜନ୍ମେ ଜାତ ଅତ୍ୟନ୍ତ ଧର୍ମଶୀଳ ହୁଅଇ ।

ଗୁରୌ ବା ଭୃଗୁପୁତ୍ରେ ବା ସ୍ୱୋଚ୍ଚମିତ୍ରାଂଶକେ ଶୁଭେ ।
ଧର୍ମାଧିପେ ବଳଯୁତେ ଧର୍ମାଧ୍ୟକ୍ଷୋ ନରୋ ଭବେତ୍ ।

ଗୁରୁ କିମ୍ବା ଶୁକ୍ର ଉଚ୍ଚେ ମିତ୍ରଘରେ ବା ତା ଅଂଶେ କିମ୍ବା ଶୁଭଗୃହେ ଥିଲେ ବଳି । ଧର୍ମେଶ ହେଲେ ବଳିଷ୍ଠ ଧର୍ମାଧ୍ୟକ୍ଷ ନରଶ୍ରେଷ୍ଠ ଜନ୍ମେ ଏଯୋଗେ ଜାତକ ହୋଇ ।

ସୌମ୍ୟ ଯୁତେ ଧର୍ମଗୃହେ ତସ୍ମିନ୍ ପାପାଂଶସଂଯୁତେ ।
କ୍ରୂରଷଷ୍ଟ୍ୟଂଶକେ ବାପି ଦମ୍ଭଧର୍ମପରଗଦଃ ।

ପାପନବାଂଶରେ କିମ୍ବା କ୍ରୂରଷଷ୍ଟ୍ୟଂଶରେ ଶୁଭଗ୍ରହ ଯେବେ ଧର୍ମେ ଥାଏ । ଏଯୋଗେ ଜନ୍ମିଲେ ନର ଗର୍ବରେ ଧର୍ମ ଆଚର କରଇ ଜାଣିବ କଷ୍ଟପ୍ର ।

ଗୁରୁଶୁକ୍ରବୁଧାଂଶସ୍ଥେ ଧର୍ମନାଥେ ଶୁଭେକ୍ଷିତେ ।
ଶୁଭଗ୍ରହାଣାଂ ମଧ୍ୟସ୍ଥେ ଧର୍ମଭକ୍ତୋ ନରୋ ଭବେତ୍ ।

ଗୁରୁଶୁକ୍ର ବା ବୁଧର ନବାଂଶରେ ଧର୍ମେଶ୍ୱର ଥିଲେ ଶୁଭଗ୍ରହର ଦୃଷ୍ଟିରେ ଅଥବା ଶୁଭଗ୍ରହର ମଧ୍ୟରେ ଥିଲେ ସେ ନର ଧର୍ମଶୀଳ ହୋଇଏ ସଂସାରେ.

ସ୍ୱଚଭାବକନାଥାନାମଂଶେ ଶୁଭସମନ୍ୱିତେ ।
ଶୁକ୍ରାଂଶେ ଶୁଭସଂଦୃଷ୍ଟେ ଶୁଚତୋ ଧର୍ମସଂଯୁତଃ ।
ଧର୍ମେ ପାପେ ପାପଗ୍ରହ୍ ସଂଯୁତ୍ ଉଦାଂଶେ ପାପସଂଯୁତେ ।
କ୍ରୂରଷଷ୍ଟ୍ୟଂଶକେ ବାପି ପାପମଧ୍ୟଗତେଽଥବା ।

ଧର୍ମେ ଥିଲେ ପାପଗ୍ରହ ପାପୀ ହୁଅଇ ନଷ୍ଟପୃ ଧର୍ମପତି ହେଲେ ପଦ୍ୟୁତ । ଦୁଇ ପାପର ମଧ୍ୟେ ବା କ୍ରୂରଷଷ୍ଟି ଅଂଶେ ଅବା ଥିଲେ ପାପୀ ଭବଇ ନିଶ୍ଚିତ ।

ଗନ୍ତୁମନ୍ଦାନ ତେ ଧର୍ମେ କ୍ରୂରାଂଶେ ଶୁଲକେକ୍ଷିତେ ।
ଉଦାଂଶେ କ୍ରୂରଗଣାଂଶେ ଭ୍ରଷ୍ଟଜନ୍ମପଦକୃଦ୍ଭବେତ୍ ।

ଅଶୁଭ ଅଂଶ ଉପରେ ଶନି ଚନ୍ଦ୍ର ଯେ ଧର୍ମରେ ଥିଲେ ଶୁକ୍ରଙ୍କର ଦୃଷ୍ଟି ଠାରେ । ଅଶୁଭବର୍ଗ ବା ଅଂଶେ ଧର୍ମପତି ଯେବେ ବସେ ଅତ୍ୟନ୍ତ ନଷ୍ଟ ବର୍ଗ କରେ ।

ପିତୃସ୍ଥାନେଶ୍ୱରେ ସୌମ୍ୟେ ଭାବଗେ ଶୁଭସଂଯୁତେ ।
ସ୍ୱବେ ବା ଶୁଭସଂଯୁକ୍ତେ ପିତୃସୌଖ୍ୟଂ ବିନିର୍ଦ୍ଦିଶେତ୍ ।

ନବମଭାବଈଶ୍ୱର ହୋଇଲେ ଶୁଭ ଖେଚର, ପିତୃଭାବକ ଶୁଭସଙ୍ଗରେ । ଭଲ ଥିଲେ ନିଜବାସ, ନବମରେ ଶୁଭଭାଏ ଭଲେ ପିତୃସୌଖ୍ୟ ପ୍ରାପ୍ତ ନରେ ।

ପାରାବତାଦଭାଗସ୍ଥେ ନାଥେ ବା ଭାବକେଽପି ବା ।
ସ୍ୱୋଚମିତ୍ରାଂଶକେ ବାପି ପିତୃସୌଖ୍ୟଂ ବିନିର୍ଦ୍ଦିଶେତ୍ ।

ପିତୃଭାବକ ବା ନାଥ ପାରାବତାଂଶସଂଯୁତ ହେଲେ କିମ୍ବା ଉଚ୍ଚଅଂଶେ ଥିଲେ । ଅଥବା ମିତ୍ର ଅଂଶର ଦୁଇରୁ ଏକ ଖେଚର ଥିଲେ ପିତୃସୁଖ ନିଶ୍ଚେ ମିଳେ ।

ସୌମ୍ୟାନ୍ତରସ୍ଥେ ତନ୍ନାଥେ ଗୁରୁଶୁକ୍ରଯୁତେକ୍ଷିତେ ।
ତେଷାମେକେନ ସଂଯୁକ୍ତେ ପିତୃସୌଖ୍ୟଂ ବିନିର୍ଦ୍ଦିଶେତ୍ ।

ଯେବେ ନବମଈଶ୍ୱର ଦୁଇଶୁଭର ମଧ୍ୟରେ ରହେ ବା ଗୁରୁ ବା ଶୁକ୍ରଯୁକ୍ତ । ଅଥବା ଦୃଷ୍ଟି ଉପରେ ପିତୃସୁଖ ଲଭକରେ ଏହିଯୋଗ ଘଟିଲେ ନିଶ୍ଚିତ ।

ଗୋପୁରାଦ୍ୟଂଶସଂଯୁକ୍ତେ ଭାବକେ ନାଥବୀକ୍ଷିତେ ।
ପାପୈରବୀକ୍ଷିତେ ଯୁକ୍ତେ ପିତୃସୌଖ୍ୟଂ ବିନିର୍ଦ୍ଦିଶେତ୍ ।

ଗୋପୁରଆଦି ଅଂଶରେ ନବମେଶ ଦୃଷ୍ଟି ଠାରେ ସଂଯୁକ୍ତ କିମ୍ବା ଦୃଷ୍ଟ ନୋହି । ପିତୃଭାବକ ରହିଲେ ପିତୃସୁଖ ନିଶ୍ଚେ ମିଳେ ଏଯୋଗ ଅନ୍ୟଥା ହେବେ ନୋହି

ପାପଦୃଷ୍ଟେ ମପଧେ ବା ଭାବକେ ଭ୍ରବନାଯୁତେ ।
ପାପାନ୍ତରଗତେ ବାପି ପିତୃଦୁଃଖଂ ବିନିର୍ଦ୍ଦିଶେତ୍ ।

---

* ପିତୃସୁଖ ଶବ୍ଦର ଦୁଇପ୍ରକାର ଅର୍ଥ ହେବ ପିତା ଠାରୁ ସୁଖ କିମ୍ବା ପିତାର ସୁଖ ।

ପିତୃ କାରକ ବା ନାଥ ହୋଇଲେ ପାପସଂଯୁତ କିମ୍ବା ଥିଲେ ପାପଦୃଷ୍ଟି ଠାରେ ।
ଅଥବା ପାପଦ୍ୱୟର ମଧ୍ୟରେ ରହିଲେ ନର ପିତୃଦୁଃଖ ଲଭଥାନ୍ତି ନରେ ।

ରବିନୀଚାଂଶକସ୍ଥେ ବା ସ୍ଥାନନାଥେ ଚ କାରକେ ।
ମନ୍ଦମାନ୍ଦ୍ୟଗ୍ରହସଂଯୁକ୍ତେ ପିତୃଦୁଃଖ ବିନିର୍ଦ୍ଦିଶେତ୍ ।

ପିତୃକାରକ ବା ନାଥ ଅଶୁଭ ନବାଂଶସ୍ଥିତ କିମ୍ବା ନୀଚନବାଂଶରେ ଥାଇ ।
ଶନି ଗୁଳିକ ବା ରାହୁ ଯୁକ୍ତ ଯେବେ ହୁଏ ସେହି ପିତୃସୁଖ କେବେ ନ ମିଳଇ ।

ସୌମ୍ୟେ ତଦ୍ଭାବେ ଚାପି ନୀଚେ କ୍ରୂରସମନ୍ୱିତେ ।
କ୍ରୂରଷଷ୍ଠ୍ୟଂଶକେ ବାପି ପିତୃଦୁଃଖଂ ବିନିର୍ଦ୍ଦିଶେତ୍ ।

ଶୁଭହୋଇ ନବମପତି ନୀଚରେ ରହିଲେ ବାପ କିମ୍ବା କ୍ରୂର ଯୁତ ଥିଲେ ହୋଇ ।
କ୍ରୂରଷଷ୍ଠି ଅଂଶ ଠାରେ ଏ ଯୋଗେ ଜନ୍ମିବା ନରେ ପିତୃସୁଖ କେବେହେଁ ନପାଇ ।

ପିତୃସ୍ଥାନେଶ୍ୱରାଂଶେଶସଂଯୁକ୍ତନବଭାଗକେ ।
କ୍ରୂରନୀଚାରିଭାଗସ୍ଥେ ପିତୃଦୁଃଖଂ ବିନିର୍ଦ୍ଦିଶେତ୍ ।

ନବମଭାବ ଈଶ୍ୱର ଯେଉଁ ନବାଂଶ ଉପର ତା ପତି ଯେ ନବାଂଶରେ ଥିବ ।
ସେ ନବାଂଶପତି ନୀଚେ, ପାପ ବା ଶତ୍ରୁ ଅଙ୍ଗେ ଥିଲେ ପିତୃଦୁଃଖ ବଢ଼ିବ ।

ଲଗ୍ନେଶାତ୍ ପିତୃନାଥେ ସମ୍ପୂର୍ଣ୍ଣବଲସଂଯୁତେ ।
କାରକେ ବା ଶୁଭୈର୍ଦୃଷ୍ଟେ ଜାତଃ ପିତୃବଶାନୁଗଃ ।

ଲଗ୍ନନାଥରୁ ଅଧିକ ବଳିଷ୍ଠ ପିତୃନାଥ ହେଲେ ବା କାରକ ଶୁଭଦୃଷ୍ଟ ଏ
ଯୋଗରେ ଜାତ ନର ହୁଏ ପିତା ଅନୁଚର ପିତା କଥାରୁ ନୁହେଁ ବାହାର ।

ପିତୃଜନ୍ମାଷ୍ଟମେ ଜାତସ୍ତତ୍ପାଣେ ଲଗ୍ନଗେଽପି ବା ।
ତେନୈବ ପିତୃକାର୍ଯାଣି କର୍ମଶେଷଂ ସମାପୟେତ୍ ।

ପିତା ଜନ୍ମ ଯେ ଲଗ୍ନରେ ତାର ଅଷ୍ଟମରାଶିରେ ପୁତ୍ରର ଲଗ୍ନ ଯେବେ ହୁଅଇ ।
କିମ୍ବା ପିତା ଲଗ୍ନେଶ୍ୱର ହେଲେ ପୁତ୍ରଲଗ୍ନର ପିତାକଥା ବଳମ୍ବ କରଇ ।

ପିତୃକର୍ମଗୃହେ ଜାତଃ ପିତୃତୁଲ୍ୟଗୁଣାନ୍ୱିତଃ ।
ପିତୃଜନ୍ମଦ୍ୱିତୀୟର୍କ୍ଷେ ଜାତଃ ପିତୃଧନାଶ୍ରିତଃ ।

ପିତା ଲଗ୍ନର ଦଶମେ ପୁତ୍ର ଯେବେ ଜନ୍ମେ କର୍ମେ ପିତୃତୁଲ୍ୟ ଗୁଣ ଲଭଇରେ ।
ପିତାପୁତ୍ରଙ୍କର ଲଗ୍ନ ଯେବେ ହୁଅଇ ସମାନ ପିତାର ଧନକୁ ଆଶ୍ରାକରେ ।

ପିତୁଃ ଷଷ୍ଠାଷ୍ଟମେ ଜାତଃ ପିତୋଃ ଶତ୍ରୁର୍ଭବେନ୍ନରଃ ।
ପିତୃକର୍ମବ୍ୟୟରାଶେଷୁ ଜାତଃ ପିତୃବଶୋଽଭବେତ୍ ।

ପିତା ଲଗ୍ନର ଷଷ୍ଠରେ ଅଥବା ଅଷ୍ଟମସ୍ଥାନରେ ଲଗ୍ନେ ହେଲେ ଶତ୍ରୁ ସେ ପିତାର
ପିତା ଲଗ୍ନର ଆଗରେ ଦ୍ୱାଦଶେ ବା ଦଶମରେ ଜନ୍ମିଲେ ବଶ ହୁଏ ପିତାର ।

ପିତ୍ରଷ୍ଟମେଶନକ୍ଷତ୍ରତ୍ରିତୟେ ଯସ୍ତୁ ଜାୟତେ ।
ସ କରୋତି ପିତୁର୍ଦୁଃଖଂ ପୁତ୍ରପୌତ୍ରସମନ୍ୱିତଃ ।

ପିତାର ଅଷ୍ଟମେଶ୍ୱର ଥିବ ଯେଉଁ ନକ୍ଷତ୍ରର ତାହାଠାରୁ ତିନିନକ୍ଷତ୍ରରେ, ପୁତ୍ରର ଜନ୍ମନକ୍ଷତ୍ର ହେଲେ କଷ୍ଟପ୍ର ସେ ପୁତ୍ର ପିତାଙ୍କୁ ରଖେ ମହାକଷ୍ଟରେ ।

ପିତୁର୍ଜନ୍ମାନ୍ତ୍ୟଭେଶର୍କ୍ଷତ୍ରିତୟେ ଯସ୍ତୁ ଜାୟତେ ।
ସ କରୋତି ପିତୁର୍ଦୁଃଖଂ ଦୂରଦେଶଗତୋ ଭବେତ୍ ।

ପିତାର ବ୍ୟୟ ଈଶ୍ୱର ରହିବ ଯେ ନକ୍ଷତ୍ର ତାହାଠାରୁ ତିନି ନକ୍ଷତ୍ରରେ । ଯେବେ ପୁତ୍ର ଜନମଇ ପିତାକୁ ଦୁଃଖ ଦଅଇ ବାସ କରଇ ଦୂରଦେଶରେ ।

ଭାଗ୍ୟାଧିପେ ବିଲଗ୍ନେଶେ ଦୃଷ୍ଟିକ୍ୟେ ଧର୍ମଗେଽପି ବା ।
ବଲବାନ ସ୍ୱୋଚ୍ଚଗେ ବାପି କେଷାଂତେ ଶ୍ରେଷ୍ଠମାନବଃ ।

ଲଗ୍ନେଶ ନବମେଶ୍ୱର ଦୁହେଁ ଥିଲେ ସପ୍ତମରେ କିମ୍ବା ନବମରେ ଥିଲେ ରହି । କିମ୍ବା ହୋଇ ବଳବାନ ଉଚ୍ଚରେ କରିଲେ ସ୍ଥାନ ମାନବ ଏ ଯୋଗେ ଶ୍ରେଷ୍ଠ ହୋଇ

ତ୍ରିକୋଣକେନ୍ଦ୍ରେ, ଯଦ ଭାଗ୍ୟନାଥେ ସୌମ୍ୟେକ୍ଷିତେ ସୌମ୍ୟଯୁତେ ବଳାଢ୍ୟେ ।
ପାରାବତାଂଶାଦିଗତେ ଶୁଭାଂଶେ ଜାତୋ ଧନାଢ୍ୟୋ ବହୁଭାଗ୍ୟଯୁକ୍ତଃ ।

ତ୍ରିକୋଣରେ ବା କେନ୍ଦ୍ରରେ ଶୁଭଗ୍ରହଙ୍କ ବା ଦୃଷ୍ଟିରେ କିମ୍ବା ପାରାବତାଦି ଅଂଶରେ । ଅବା ଶୁଭଅଂଶେ ଯାଇଁ ଭାଗ୍ୟେଶ ବଳିଷ୍ଠ ହୋଇଥିଲେ ଧନ୍ୟ ଭାଗ୍ୟ ଯୁକ୍ତ ହବେ ।

ଧର୍ମାଧିପେ ଲାଭଗତେ ତଦୀଶେ ଭାଗ୍ୟସ୍ଥିତେ କେନ୍ଦ୍ରବନାଧିପେଽର୍ଥେ ।
କର୍ମାଧିପେନାପି ଯୁତେଽଥ ଦୃଷ୍ଟେ ଜାତୋ ମହାଭାଗ୍ୟଯୁତୋ ନରଃ ସ୍ୟାତ୍ ।

ନବମେଶ ଲାଭେ ଥିବ ଲାଭେଶ ଭାଗ୍ୟେ ରହିବ କିମ୍ବା ଭାଗ୍ୟେଶ୍ୱର ଧନେ ଥାଇ । ଦଶମେଶ ସଙ୍ଗେ ଯୁକ୍ତ କିମ୍ବା ଦଶମେଶ ଦୃଷ୍ଟ ହେଲେ ମହାଭାଗ୍ୟ ସେ ଦଅଇ ।

ତୃତୀୟସ୍ଥଶେରଧିପେନ ଯୁକ୍ତେ ଭାଗ୍ୟାଧିପେ ସୌମ୍ୟଦୃଶା ସମେତେ ।
ଶୁକ୍ରାନ୍ୱିତେ ବା ନବଖେଚରାଂଶେ ଭ୍ରାତୃର୍ବିନାଭାଗ୍ୟମୁପେତି ଜାତଃ ।

ଶୁଭଯୁକ୍ତ କିମ୍ବା ଦୃଷ୍ଟ ଶୁଭଅଂଶେ ଅବା ସ୍ଥିତ ଭାଗ୍ୟପତି ସହଜେଶ ସଙ୍ଗେ । ଯନ୍ତ୍ର ତହିଁ ଥିଲେ ବନ୍ଧୁ ଭାଇଠାରୁ ଧନପାଇ ଭାଗ୍ୟେ ବାହାରେ ଜନ୍ମ ବଙ୍ଗେ ।

ପୁତ୍ରେଶ୍ୱରେ ବା ଯଦି ଭାଗ୍ୟଗଶୌ ଭାଗ୍ୟାଧିପେନାପି ଯୁତେଽପି ଦୃଷ୍ଟେ ।
କେନ୍ଦ୍ରରେ ବା ଯଦି ପୁତ୍ରଭାବେ ଜାତଃ ସୁତାଦ୍ଭାଗ୍ୟମୁପୈତି ବର୍ତ୍ତି ।

ପଞ୍ଚମେଶ ଭାଗ୍ୟେ ଥିଲେ ଭାଗ୍ୟେଶଯୁକ୍ତ ବା ହେଲେ କିମ୍ବା ଭାଗ୍ୟେଶ ଦୃଷ୍ଟିରେ ଥିଲେ । ଅଥବା ଭାଗ୍ୟକାରକ ପଞ୍ଚମରେ ଥିଲେ ନେଣ ପୁତ୍ରଯୋଗୁଁ ଭାଗ୍ୟ-ଲାଭ ମିଳେ ।

ଲାଭସ୍ଥାନାଧିପେ ଭାଗ୍ୟେ ଭାଗ୍ୟେଶେ ଲାଭସଂଗତେ ।
ଲାଭକାରକସଂଯୁକ୍ତେ ଲାଭଭାଗ୍ୟମୁପୈତି ସଃ ॥

ଭାଗ୍ୟେ ଥିଲେ ଏକାଦଶେଶ ଚତୁର୍ଥେ ଥିଲେ ଭାଗ୍ୟେଶ ଲାଭକାରକରେ ଯୁକ୍ତ ହୋଇ ।
ଏଯୋଗେ ଜନ୍ମିବା ନର ଲାଭରୁ ଭାଗ୍ୟ ନରର ଲଭି ହେଜ ଭାଗ୍ୟବାନ ହୋଇ ।

ବଳବତ୍କାରକାଦେବଂ ତସ୍ଥାନେଶ କ୍ରମେଣ ତଥା ।
ଭାଗ୍ୟାଧିପସ୍ୟ ଶତ୍ରୁକ୍ଷେତ୍ରସ୍ଥନୀଚସ୍ଥିତସ୍ତଥା ।
ତଦ୍ବାଶେ ଭାଗ୍ୟସମ୍ବନ୍ଧେ ଶତ୍ରୁଭାଗ୍ୟମୁପେତି ସଃ ।
ଷଷ୍ଠାଷ୍ଟମାନ୍ତ୍ୟନାଥେନ ଯୁକ୍ତେ ନାଥୋଽଙ୍ଗ ତତ୍ଫଳଂ ॥

କିମ୍ବା ନାଥ ବା କାରକ ଜାଗ୍ରସ୍ଥାନୁ ଅବା ଦେଖି ପୂର୍ବପରି ଯୋଗଥିଲେ ହୋଇ ।
ନାଶର ହେତୁରୁ ଭାଗ୍ୟ ଲଭିବା ଘଟଇ ଯୋଗ ସର୍ବ ଭାବେ ଏହିପରି କହି ।
ଭାଗ୍ୟେଶ୍ୱର ଷଷ୍ଠେଶ୍ୱର ଶତ୍ରୁ ହୋଇ ନବମରେ ଥିଲେ ଶତ୍ରୁଭାଗ୍ୟ ଲଭେ ନର ।
ଷଷ୍ଠ ଅଷ୍ଟମ ଦ୍ୱାଦଶ-ନାଥଙ୍କ ସଙ୍ଗେ ଭାଗ୍ୟେଶ ଥିଲେ ପୂର୍ବଫଳକୁ ବିଚାର ॥

ଭାଗ୍ୟାଧିପେ ବଳ ଷଷ୍ଠେ ଶତ୍ରୁନୀଚଗ୍ରହବୀକ୍ଷିତେ ।
ତୃତୀୟାଂଶେ ନୀଚଗଣାଦୌ ଭାଗ୍ୟହୀନୋ ଭବେନ୍ନରଃ ।

ଶତ୍ରୁ ବା ନୀଚ ଗ୍ରହର ଦୃଷ୍ଟିଠାରେ ଭାଗ୍ୟେଶ୍ୱର ବାସୁରେ ବା ନିଜ ନୀଚଘରେ ।
କିମ୍ବା ଅଶୁଭ ଅଂଶରେ ଥିଲେ ଭାଗ୍ୟହୀନ ନର ହୁଅନ୍ତି ଜନ୍ମିଲେ ଏ ଯୋଗରେ ॥

ଗୁରୁଶୁକ୍ରେକ୍ଷିତେ ଯୁକ୍ତେ ଭାଗ୍ୟେ ତନ୍ନାଥକେଽପି ବା ।
ଲଗ୍ନେଶାର୍ଥଗତ ଭାଗ୍ୟେ ଭାଗ୍ୟପ୍ରାପ୍ତିଃ ପୁନର୍ଭବେତ୍ ॥

ଗୁରୁ ବା ଶୁକ୍ର ଦୃଷ୍ଟିରେ ଅବା ତାହାଙ୍କ ସଙ୍ଗରେ ଭାଗ୍ୟେଶ୍ୱର ଯେବେ ଥାଏ ରହି ।
ଲଗ୍ନପତି ଧନେଶ୍ୱର ରହିଲେ ବା ଭାଗ୍ୟଘର ଗରବକୁ ସୁଭାଗ୍ୟ ମିଳଇ ।

ଶୁଭରାଶ୍ୟଂଶକେ ଭାଗ୍ୟନାଥେ ଶୁକ୍ରେଜ୍ୟବୀକ୍ଷିତେ ।
ଭାଗ୍ୟେ ଲଗ୍ନେଶସଂଦୃଷ୍ଟେ ଭାଗ୍ୟନାଶଂ କରୋତି ସଃ ॥

ଅଶୁଭରାଶି ବା ଅଂଶେ ଭାଗ୍ୟେଶ୍ୱର ଯେବେ ବସେ ଗୁରୁ ଅବା ଶୁକ୍ରଦୃଷ୍ଟିଠାରେ ।
ଲଗ୍ନେଶ ଦୃଷ୍ଟି ଭାଗ୍ୟରେ ହୋଇଥିଲେ ଏ ଯୋଗରେ ଭାଗ୍ୟହୀନ ହୋଇଥାନ୍ତି ନରେ

ଲଗ୍ନେଶେ ଭାଗ୍ୟରାଶିସ୍ଥେ ଭାଗ୍ୟେଶେ ଲଗ୍ନରାଶିଗେ ।
ଲଗ୍ନେ ଭାଗ୍ୟେଶସଂଯୁକ୍ତେ ପୁନର୍ଭାଗ୍ୟଂ ଭବେତ୍ ଖଲୁ ॥
ଲାଭଭାଗ୍ୟେଶସଂଯୁକ୍ତେ ଭାଗ୍ୟେଽର୍ଥେ ପୁନର୍ଭବେତ୍ ।

ଲଗ୍ନେଶ ଥିଲେ ଭାଗ୍ୟରେ ଭାଗ୍ୟେଶ ଥିଲେ ଲଗ୍ନରେ କିମ୍ବା ଲଗ୍ନେ ଥିଲେ ଭାଗ୍ୟେଶ୍ୱର । ସପ୍ତମେଶ ସଙ୍ଗେ ଯୁକ୍ତ ହୋଇଥିଲେ ଭାଗ୍ୟନାଥ ନଷ୍ଟଭାଗ୍ୟ ଲଭିବେ ନର ।

କର୍ମେଶେ ଭାଗ୍ୟରାଶିସ୍ଥେ ଭାଗ୍ୟେଶେ ବଳସଂଯୁତେ ।
ଗୁରୁଶୁକ୍ରଯୁତେ ଦୃଷ୍ଟେ ଜପଧ୍ୟାନସମାଧିମାନ୍ ।

ଗୁରୁ ବା ଶୁକ୍ରଦୃଷ୍ଟିରେ ଅଥବା ତାଙ୍କସଙ୍ଗରେ ବଳିଷ୍ଠ ଭାଗ୍ୟେଶ ଥିଲେ ବନ୍ଧୁ । କର୍ମେଶ ଥିଲେ ଭାଗ୍ୟରେ ଯୋଗୀ ହୋଇଥାନ୍ତି ନରେ ଧର୍ମେ ମତି ସର୍ବଦା ରହଇ ।

କର୍ମେଶଭୁକ୍ତରାଶ୍ୟଂଶସ୍ୱାମିନି ବଳସଂଯୁତେ ।
ତଦ୍ଭାବେଶେ ଭାଗ୍ୟସମ୍ବନ୍ଧେ ଜପଧ୍ୟାନସମାଧିମାନ୍ ।

କର୍ମେଶ ଯେଉଁ ରାଶିରେ କିମ୍ବା ଯେଉଁ ନବାଂଶରେ ଥିବ ତାହାର ବଳିଷ୍ଠ ହୋଇ । ନବମରେ ଥିଲେ ବନ୍ଧୁ ଏ ଯୋଗେ ଯୋଗୀ ହୁଅଇ ଧର୍ମେ ମତି ସର୍ବଦା ରହଇ ।

ଦେବଲୋକାଂଶସଂସ୍ଥେ ବା କର୍ମେଶେ ଭାଗ୍ୟପେଽଥବା ।
ପାରାବତାଂଶକେ ସୌମ୍ୟୈର୍ଦୃଷ୍ଟେ ସ୍ୟାତ୍ ବ୍ରହ୍ମନିଷ୍ଠତା ।

ଶୁଭଗ୍ରହର ଦୃଷ୍ଟିରେ ଥିଲେ ପାରାବତାଂଶରେ କିମ୍ବା ଦେବଲୋକଅଂଶରେ ଥିଲେ । ଭାଗ୍ୟେଶ ବା କର୍ମେଶ୍ୱର ଏଯୋଗେ ଜନ୍ମିବା ନର ବ୍ରହ୍ମଜ୍ଞାନୀ ହୁଏ ଶାସ୍ତ୍ରେ ବୋଲେ ।

ଦାନସ୍ଥାନାଧିପେ ସ୍ୱୋଚ୍ଚେ ଶୁଭଗ୍ରହନିରୀକ୍ଷିତେ
ତତ୍ସ୍ଥାନେ ଶୁଭସଂଯୁକ୍ତେ ଦାନକୃନ୍ନୃପୋ ଭବେତ୍ ।

ଶୁଭଗ୍ରହର ଦୃଷ୍ଟିରେ ଭାଗ୍ୟେଶ ଥିଲେ ଉଚ୍ଚରେ ଭାଗ୍ୟରେ ବା ଥିଲେ ଶୁଭଗ୍ରହ । ଦାନଶୀଳ ହୁଏ ନର ଜ୍ୟୋତିଷଶାସ୍ତ୍ରବଚନ ଅନ୍ୟଥା କେବେହେଁ ତ ନୁହଇ ॥

ପାରାବତାଦିଭାଗସ୍ଥେ ଦାନେଶେ ଗୁରୁବୀକ୍ଷିତେ ।
ଲଗ୍ନେଶେ ଭୃଗୁସନ୍ଦୃଷ୍ଟେ ମହାଦାନକରୋ ନରଃ ।

ଗୁରୁର ଦୃଷ୍ଟି ଉପରେ ପାରାବତାଦିଭାଗରେ ନବମଈଶ୍ୱର ଥିଲେ ବନ୍ଧୁ । ଲଗ୍ନେଶରେ ଶୁକ୍ରଦୃଷ୍ଟି ଥିଲେ ମହାଦାତା ସେହି ଏ ଯୋଗରେ ଯେ ଜାତ ହୁଅଇ ।

ଦାନାଧିପେନ ସନ୍ଦୃଷ୍ଟେ ଲଗ୍ନେ ତନ୍ନାଥସଂଯୁତେଽପି ବା ।
ତସ୍ମିନ୍ କେନ୍ଦ୍ରତ୍ରିକୋଣସ୍ଥେ ମହାଦାନକରୋ ନରଃ ।

ଲଗ୍ନ ବା ଲଗ୍ନଈଶ୍ୱର ନବମେଶ ଦୃଷ୍ଟି ଠାରେ ଥିଲେ କିମ୍ବା ଲଗ୍ନର ନାଥଙ୍କ ନବମେଶ ଦୃଷ୍ଟି ଠାରେ ଥିଲେ କେନ୍ଦ୍ରତ୍ରିକୋଣରେ ମହାଦାତା ହୁଅଇ ଜାତକ ॥

ସିଂହାସନାଂଶଗେ ଦାନନାଥେ ଲଗ୍ନେଶବୀକ୍ଷିତେ ।
କର୍ମେଶେନାପି ସଂଦୃଷ୍ଟେ ମହାଦାନୀ ନରୋ ଭବେତ୍ ।

ଲଗ୍ନେଶ ଆଉ କର୍ମେଶ ଦୃଷ୍ଟି ଠାରେ ନବମେଶ ସିଂହାସନ ଅଂଶେ ଥିଲେ ବନ୍ଧୁ । ମହାଦାନୀ ହୁଏ ନର ଗଣକେ ବିଚାର କର ଏଫଲ ଅନ୍ୟଥା କେବେ ନୋହୁ ॥

ଭାଗ୍ୟଯୋଗେଽପି ସଞ୍ଜାତେ ଦାନଯୋଗେ ତଥା ଭବେତ୍ ।
ରାଜଯୋଗେଽଥବା ପ୍ରାପ୍ତେ ନେତରେଷାଂ ତଥା ଭବେତ୍ ।

ଜନ୍ମିଥିଲେ ଭାଗ୍ୟଯୋଗେ କିମ୍ବା ଦାନଯୋଗ ଯୋଗେ ଅବା ରାଜଯୋଗ ଥିଲେ ।
ହୋଇ । ଦାନୀ ହୁଅଇ ମାନବ, ଘଟିଥିଲେ ଅନ୍ୟଯୋଗ ଦସ୍ୟୁପଦ ତା ହୁଏନାହିଁ

(ଇତରେଷାଂ ତୁ ସଞ୍ଜାତେ ଦାନଯୋଗଃ କଥଂ ଭବେତ୍ ।
ଭାଗ୍ୟଯୋଗେ ନରେ ଜାତେ ଦାନସ୍ୟ ଚେଷ୍ଟାହ୍ୟକୃତ୍)

ଘଟିଥିଲେ ଅନ୍ୟଯୋଗ କିପରି ବା ଦାନୀ ହେବ ଅସମ୍ଭବ ଅଟଇ ଏ କଥା ।
ଭାଗ୍ୟଯୋଗେ ଜାତ ନର ପ୍ରବର୍ତ୍ତି ସେ ଦାନର କଲେ ଦାନୀ ନୁହଇ ସର୍ବଥା

ଜାତଃ ପୁରୋହିତୋ ବାଥ ବ୍ରହ୍ମବଂଶସମୁଦ୍ଭବଃ ।
ଦାନାଧ୍ୟକ୍ଷୋଽଥ ଜାତଃ ସ୍ୟାଦ୍ ବର୍ଣ୍ଣଭେଦବିକଳ୍ପନାତ୍ ।

ବ୍ରାହ୍ମଣ ଦାନଯୋଗରେ ଜନ୍ମିଲେ ପୁରୋହିତରେ କିମ୍ବା ଦାନାଧ୍ୟକ୍ଷ ପଦ ପାଇ ।
ଜାତିଭେଦ ଅନୁସାରେ ବର୍ଣ୍ଣର କରିବ ନରେ ଯହିଁ ଯେପରି ଯୋଗ ଘଟଇ ।

ଚତୁର୍ଥେ ଦାନସ୍ଥାନେଶେ କର୍ମେଶେ କେନ୍ଦ୍ରମାଶ୍ରିତେ,
ବ୍ୟୟେଶେ ଗୁରୁସଂଦୃଷ୍ଟେ ମହାଦାନକରୋ ଭବେତ୍ ।

ନବମେଶ ଚତୁର୍ଥରେ କର୍ମେଶ ଥିଲେ କେନ୍ଦ୍ର ରେ ବ୍ୟୟେଶରେ ଥିଲେ ଗୁରୁଦୃଷ୍ଟି
ମହାଦାନୀ ହୁଏ ନର ଏଯୋଗେ ଜନ୍ମ ଯାହାର ଭବିଷ୍ୟତବାଣୀର ଏ ସୃଷ୍ଟି ।

ଭାଗ୍ୟେଶେନାପି ସଂଦୃଷ୍ଟେ ସ୍ତୋତ୍ରସ୍ଥେ ସୋମନନ୍ଦନେ ।
ଲାଭେଶେ କେନ୍ଦ୍ର ଭାବସ୍ଥେ ମହାଦାନକରୋ ଭବେତ୍ ।

ଭାଗ୍ୟନାଥର ଦୃଷ୍ଟିରେ ବୁଧ ଥିଲେ ତୃତୀୟଘରେ ଲାଭେଶର ଥିଲେ କେନ୍ଦ୍ର ଘରେ ।
ଏଯୋଗେ ଜନ୍ମ ବା ନର ଦାନୀ ହୁଅଇ ମୁନିଋଷି ଏ କହନ୍ତି ଶାସ୍ତ୍ରରେ ।

ଲଗ୍ନେଶେ ଲାଭରାଶିସ୍ଥେ କର୍ମେଶେ ବଳସଂଯୁତେ ।
ଲଗ୍ନେଶେନାପି ସଂଦୃଷ୍ଟେ ଦାନଗ୍ରହଣମିଷ୍ୟତେ ।

କର୍ମେଶ ବଳୀ ହୋଇବ ଲଗ୍ନେଶଦୃଷ୍ଟିରେ ଥିବ ଲଗ୍ନେଶର ଲାଭେ ଥିଲେ ।
ରହୁ । ଏଯୋଗେ ଜନ୍ମିବା ନର ଦାନଗ୍ରହଣତତ୍ପର ଋଷିଏ ଶାସ୍ତ୍ରରେ ଥାନ୍ତି କହୁ ।

ଷଷ୍ଠେଶେ ଭାଗ୍ୟରାଶିସ୍ଥେ କର୍ମଭାଗ୍ୟପସଂଯୁତେ ।
ଲଗ୍ନେଶେନାପି ସଂଦୃଷ୍ଟେ ଦାନପ୍ରାପ୍ତିର୍ନ ସଂଶୟଃ ।

ଭାଗ୍ୟେଶ ଓ କର୍ମେଶ ସଙ୍ଗତରେ ପଞ୍ଚମେଶ ଯେବେ ଭାଗ୍ୟ ଭବେ ଥାଏ ବହୁ
ଲଗ୍ନେଶ ଦୃଷ୍ଟି ତାହାରେ ଯଦ୍ୟପି ସଞ୍ଚାର କରେ ସେ ନର ଦାନ ସର୍ବଦା ପାଇ ।

ଭାଗ୍ୟେଶେ କର୍ମନାଥେନ ଦୃଷ୍ଟେ କେନ୍ଦ୍ରତ୍ରିକୋଣଗେ ।
ନବମୋଚ୍ଚାଂଶଗେ ବାପି ଦାନପ୍ରାପ୍ତିର୍ନ ସଂଶୟଃ ।

କର୍ମେଶ ଦୃଷ୍ଟି ଉପରେ ଲଗ୍ନେଶ ଥିଲେ କେନ୍ଦ୍ରରେ କି କୋଣେ ବା ପଞ୍ଚମ ଉଚ୍ଚରେ ଏ ଯୋଗେ ଜାତ ମାନବ ଇଷ୍ଟସ୍ଥ ଦାନ କରନ୍ତି ପ୍ରମାଣ ଏ ଶାସ୍ତ୍ରବଚନରେ ।

ଗୁରୁସ୍ଥାନେଶସଂଯୁକ୍ତନବାଂଶାଧିପତୌ ଯଦା ।
ଗୁରୁଶୁକ୍ରେକ୍ଷିତେ ବାପି ଗୁରୁଭକ୍ତିଯୁତୋ ଭବେତ୍ ॥

ଯେ ନବାଂଶେ ନବମେଶ ଥାଆନ୍ତି ଯେ ଗୃହେ ବାସ କରଥିବ ତହିଁ ଶୁକ୍ର ଗୁରୁ ଦୃଷ୍ଟି ରଖିଥିଲେ ଜାତ ଜନ ହୁଏ ଗୁରୁଭକ୍ତ ବିଗ୍ରହ ଗଣନ୍ତେ ଜାତକରୁ ।

ଗୁରୁସ୍ଥାନେ ସୌମ୍ୟଯୁତେ ଗୁରୁସମ୍ବନ୍ଧସଂଯୁତେ ।
ତଦୀଶେ ଶୁଭଭାବସ୍ଥେ ଗୁରୁଭକ୍ତିଯୁତୋ ଭବେତ୍ ।

ବୃହସ୍ପତି ଯୁକ୍ତ ଦୃଷ୍ଟ କିମ୍ବା ଶୁଭଗ୍ରହ ଯୁକ୍ତ ହୋଇଥିଲେ ନବମ ଭବନ । ଉତ୍ତମ ସ୍ଥାନରେ ଯାଇ ନବମେଶ ଥିଲେ ବହୁ ଗୁରୁଭକ୍ତ ହୁଏ ଜାତ ଜନ ।

ଇତି ଶ୍ରୀ ସର୍ବାର୍ଥଚିନ୍ତାମଣୌ ସପ୍ତମୋଽଧ୍ୟାୟଃ ।

---

## ଅଷ୍ଟମୋଽଧ୍ୟାୟଃ

### ଦଶମାଦଷ୍ଟଭାବଫଳବର୍ଣ୍ଣନଃ

ଦଶମାତ୍ ପ୍ରବୃତ୍ତିମଜ୍ଞାଂ ବୃତ୍ତିଂ କୀର୍ତ୍ତିଂ ପ୍ରବାସପୂର୍ବ୍ୱିଧାନ୍ ।
ମାନଂ କର୍ମାଜୀବଂ ଜ୍ଞାନସ୍ଥାନଂ ଚ ବଦଦ୍ଵିଶେଷଦ୍ଵାସନ୍ ।

ଦଶମରୁ କାର୍ଯ୍ୟେ ଇଚ୍ଛା, ବୃତ୍ତି ମତ, ବୃଷ୍ଟି, ପୃଚ୍ଛା, ସମ୍ମାନ, କୀର୍ତ୍ତି ଆଜ୍ଞ ପ୍ରବାସସ୍ଥାନ ଦେବାଳୟ ଜଳାଶୟ,ଆଜ ଜୀବିକା କର୍ଣ୍ଣସ୍ଥ ବୃତ୍ତାଂଶ, ଜ୍ଞାନସ୍ଥାନ ଏତେକ ଜାଣ,

କର୍ମାଧିପେ ହୀନବଳେ ସପାପେ କର୍ମାଦିବୈକଲ୍ୟମୁଶନ୍ତି ତଜ୍ଜ୍ଞାଃ ।
କର୍ମେଶବାଗୀଶ ଶଶାଙ୍କସୂନା ବୀର୍ଯ୍ୟାନ୍ୱିତା ଯଜ୍ଞକରା ଭବନ୍ତି ।

ବଳହୀନ କର୍ମପତି ପାପସଙ୍ଗରେ ବସନ୍ତି ଥିଲେ ନାନାବିଧ ଜନ୍ମାଏ କାର୍ଯ୍ୟଗୋଳ ଗୁରୁ ବୁଧ କର୍ମନାଥ ହୋଇଥିଲେ ବୀର୍ଯ୍ୟଯୁକ୍ତ ପୁଣ୍ୟବନ୍ତ ଯଜ୍ଞକର୍ତ୍ତା ହୁଅଇ ତାଳ ।

ଶୁଭଗ୍ରହୈର୍ଦୃଷ୍ଟସମନ୍ୱିତାସ୍ତେ ବୀର୍ଯ୍ୟାନ୍ୱିତା ଯଜ୍ଞବିଶେଷମାହୁଃ ।
ଦୁଃସ୍ଥାଃ ଶଶାଙ୍କାମ୍ବୁଜଜୀବଶୁକ୍ରାଃ ପାପେକ୍ଷିତାଃ କର୍ମବିନାଶମାହୁଃ ।

ବୁଧ ଗୁରୁ କର୍ମନାଥ ହେଲେ ଶୁଭ ଦୃଷ୍ଟି ଯୁତ, ବହୁ ଯଜ୍ଞ କରନ୍ତି ସେ ହେଲେ ବଳିଷ୍ଠ । ବୁଧ ଗୁରୁ ଭୃଗୁସୁତ ମନ୍ଦସ୍ଥାନେ ହେଲେ ସ୍ଥିତ ପାପଦୃଷ୍ଟ ହେଲେ କରେ କର୍ମ ବିନଷ୍ଟ ।

ନାଶସ୍ଥିତାସ୍ତତ୍ର ତଦଂଶନାଥସ୍ତଦ୍ଵ୍ରୁକ୍ରସ୍ଥେଶେରଧିପାସ୍ତ ନାଶେ ।
ସଚ୍ଚୌ ଚ ମାନ୍ଦେ ଯଦିବା ଦିନେଶେ ଭାଗୀରଥୀସ୍ନାନମୁଶନ୍ତି ତଜ୍ଜ୍ଞାଃ ।

ବୁଧ ଗୁରୁ କର୍ମପତି ସଂଯୁତ ରାଶିର ପତି, କିମ୍ବା ନବମାଂଶପତି କଲେ ବସତି ॥ ବ୍ୟୟରେ ନାଶିଲ କର୍ମ ଗଙ୍ଗାସ୍ନାନଲାଭେ ଧର୍ମ ସ୍ୱଚ୍ଛ କିମ୍ବା ରବି ଥିଲେ ଦଶମେ ସ୍ଥିତି

ମୀନେ ଚ ମାନେ ଯଦି ବା ସବୌମ୍ୟେ ଭୌମାନ୍ୱିତେ ବା ଭଗୌ ଚ ପଙ୍କ୍ତିଃ
ଜଳର୍କ୍ଷଗେ ପୂର୍ଣ୍ଣଶଶାଙ୍କଜାତେ ମାନସ୍ଥିତେ ଗାଙ୍ଗଜଳାଦିପୂତଃ ।

ଦଶମେ କିମ୍ବା ମୀନରେ ବୁଧ ମଙ୍ଗଳ ସଙ୍ଗରେ ଥିଲେ ଏ ଯୋଗରେ ଜାତ ହୁଏ ବିମୁକ୍ତ । ଦଶମେ ଜଳରାଶିରେ ପୂର୍ଣ୍ଣଚନ୍ଦ୍ର ବାସରରେ କିମ୍ବା ଜାତ ଥିଲେ ଗଙ୍ଗାଜଳ ପବିତ୍ର ।

ମାନେ ଗୁରୌ ଶୁକ୍ରଯୁତେ ଚ କେନ୍ଦ୍ରେ ସ୍ୱୋଚ୍ଚସ୍ଥିତେ ତାଦୃଶତୋୟପୂତଃ ।
ବୁଧେ ବ୍ୟୟେ ବା ଯଦି ବା ତଦୀଶେ ସ୍ୱୋଚ୍ଚାନ୍ୱିତେ ତାଦୃଶପୁଣ୍ୟଭାକ୍ ସ୍ୟାତ୍

ଗୁରୁ ଥିବ ଦଶମରେ ଶୁକ୍ର ରହିବ କେନ୍ଦ୍ରରେ ଉଚ୍ଚ ହୋଇ ଗଙ୍ଗାଜଳେ ହୁଏ ପବିତ୍ର । ବୁଧ ରହିଲେ ବ୍ୟୟରେ କର୍ମେଶ ଥିଲେ ଉଚ୍ଚରେ ଗଙ୍ଗାଜଳରେ ପବିତ୍ର ହୁଅଇ ଗତି ।

ମାନେ ଧନେ ଶୁକ୍ରଯୁତେ ସଜୀବେ ଽନ୍ୟଦ୍ରୋଚଗେ ତାଦୃଶତୋୟପୂତଃ ।
ଚନ୍ଦ୍ରେ ତୃତୀୟେ ଜଳରାଶିଯୁକ୍ତେ ସୌମ୍ୟାନ୍ୱିତେ ତାଦୃଶପୁଣ୍ୟଭାକ୍ ସ୍ୟାତ୍ ।

ଗୁରୁସଙ୍ଗେ ଭୃଗୁସୁତ ଧନେ ବା ଦଶମେ ସ୍ଥିତ କେନ୍ଦ୍ରେ ବା ଉଚ୍ଚରେ ଥିଲେ ସଦା ପବିତ୍ର ହି । ତୃତୀୟେ ଜଳରାଶିରେ ଚନ୍ଦ୍ର ଶୁଭସଙ୍ଗତରେ ଥିଲେ ଗଙ୍ଗାଜଳ ପୂତ ଜାତକଗଣ ।

ଶୁଭେକ୍ଷଣେ କେନ୍ଦ୍ରଯୁତେ ଜଳର୍କ୍ଷେ ସ୍ୱୋଚ୍ଚେ ସ୍ଥିତେ ତାଦୃଶ ତୋୟପୂତଃ ।
ବୁଧେ ସଜୀବେ ଯଦି ବା ସଭୌମେ ପ୍ରାକାରକୂପାଦି ଗୋପୁରସଦ୍ମାନ୍ ।

କେନ୍ଦ୍ରରେ ଜଳରାଶିରେ ରହିଲେ ଶୁଭଦୃଷ୍ଟିରେ ନବମେଶ ଉଚ୍ଚେ ଗଙ୍ଗାଜଳେ ପବିତ୍ର । ଗୁରୁ ବା କୁଜସଙ୍ଗରେ ବୁଧ ଥିଲେ ଦଶମରେ ପ୍ରାକାର ମଣ୍ଡପ ଆଦି କରଇ ଜାତ ।

ମାନସ୍ଥିତେ ଚନ୍ଦ୍ରସୁତେ ସନାଥ ଯୁକ୍ତେ ବଂଶେଷୁ ଜୀର୍ଣ୍ଣୋଦ୍ଧରଣାଦି ତସ୍ୟ ।

ବୁଧଥିଲେ ଦଶମରେ ଦଶମେଶ ସଙ୍ଗତରେ ଜୀର୍ଣ୍ଣୋଦ୍ଧାର କରଇ ରେ ଏ ଯୋଗେ ଜାତ

କର୍ମସ୍ଥିତେ କୂପାଦିତଟାକଭୂମିଂ କର୍ମେଶ୍ୱରେ ଗୋପୁରଭାଗଯୁକ୍ତେ ।
ମୃଦ୍ୱଂଶକେ ବା ଶୁଭଦୃଷ୍ଟିଯୁକ୍ତେ ସ୍ୱର୍ଗେଣ୍ୱରେଣାପି ଧରାପିତେ ବା ।

କର୍ମସ୍ଥର ଗୋପୁର ଯେବେ କିମ୍ବା ମୃଦୁଅଂଶରେ ରହିଥିଲେ ଅବା ଶୁଭଦୃଷ୍ଟି ଉପରେ । ନବମେଶ ଦୃଷ୍ଟି ଯଦି ବା ସଂଯୁକ୍ତ ହୋଇ କୂପତଡ଼ାଗ ନିର୍ମାଣ ଏ ଯୋଗେ କରେ ।

ଚନ୍ଦ୍ରାମ୍ବୁଜେ କର୍ମଗତେ ତଦୀଶେ ଭାଗ୍ୟସ୍ଥିତେ ପାପବିବର୍ଜିତେ ସ୍ୟାତ୍ ।
ସୌମ୍ୟେକ୍ଷିତେ ଶୋଭନଭାବଯୁକ୍ତେ ଯଜ୍ଞସ୍ୟ କର୍ତ୍ତା ସ ଭବେଦୁଦାରଃ ।

ବୁଧ ଥିବ ଦଶମରେ ଦଶମେଶ ନବମରେ ପାପସମ୍ବନ୍ଧ ଯେବେ ବର୍ଜିତ ହୋଇ ଶୁଭଗ୍ରହର ଦୃଷ୍ଟିରେ ରହିଥିଲେ ଶୁଭଗୃହରେ ଏ ଯୋଗେ ଜନ୍ମିଲେ ନର ଯାଗ କରଇ

କର୍ମାଧିପେଽସ୍ମିନ୍ ଯଦି ସୋମସୂନୌ ସ୍ୱୋଚ୍ଚସ୍ଥିତେ ବା ଯଦି ଧର୍ମସଂସ୍ଥେ ।
ବିବର୍ଜ୍ଜିତଃସ୍ୟାଚ୍ଛିଖିସୂର୍ଯ୍ୟପାପୈର୍ଲଗ୍ନସ୍ୟ କର୍ତ୍ତା ସ ଭବେଉଦାନୀଂ ।

ବୁଧ କର୍ମପତି ହୋଇ ଉଚ୍ଚେ ବା ଧର୍ମରେ ରହି ସୂର୍ଯ୍ୟକେତୁ ପାପଗ୍ରହ ସମ୍ବନ୍ଧ ଦୂର । ହୋଇଥିଲେ ଏ ଯୋଗରେ ଜାତ ହୁଅନ୍ତି ଯେ ନରେ ଯଜ୍ଞକରତା ହୁଅନ୍ତି ଏହା ମୁକର ।

କର୍ମାଧିପେ ସ୍ୱୋଚ୍ଚଗତେ ସପାପେ ନୀଚାଂଶଗେ ନାଶଗତେଽପି ତସ୍ମିନ୍ ।
ବିଘ୍ନୋ ଭବେତ୍ୟଜ୍ଞ ମଖସ୍ୟ ତସ୍ୟ କ୍ରୂରଦ୍ରେକ୍କାଣାଂଶଗତେଽପି ଚୈବଂ ।

ଉଚ୍ଚରେ କର୍ମଈଶ୍ୱର ଥିଲେ ନୀଚାଂଶ ଉପର ପାପସହିତରେ ବ୍ୟୟ ଭବନେ ଥାଇ ଅବା କ୍ରୂରଷଷ୍ଟି ଅଂଶେ କର୍ମପତି ଯେବେ ବସେ ଯାଗଆରମ୍ଭିଲେ ବିଘ୍ନ ଘଟେଁ ଘଟଇ

ତୁଙ୍ଗସ୍ଥିତେ ସୋମସୁତେ ତଦୀଶେ ସ୍ୱୋଚ୍ଚାନ୍ୱିତେ ସୋମସୁତେନ ଦୃଷ୍ଟେ ।
ଶୁଭେକ୍ଷିତେ ବା ସବୁଧେ ସ୍ୱସଂଶୌ ଯଜ୍ଞସ୍ୟ କର୍ତ୍ତା ସେ ଭବେଉଦାନୀଂ ।

ଉଚ୍ଚସ୍ଥବୁଧ ଦୃଷ୍ଟିରେ କର୍ମପତି ଉଚ୍ଚଘରେ କିମ୍ବା ବୁଧ ସଙ୍ଗତରେ ନିଜସ୍ୱକ୍ଷିରେ ରହିଲେ ଶୁଭଦୃଷ୍ଟିରେ ଜନମିଲେ ଏ ଯୋଗରେ ଯଜ୍ଞକର୍ତ୍ତା ନିଶ୍ଚେ କରେ ଲେଖା ଶାସ୍ତ୍ରରେ ।

ଅଗ୍ନିସ୍ଥାନାଧିପେ ସୌମ୍ୟେ ଶୁଭଦୃଷ୍ଟିଯୁତେଽପି ବା ।
ଶୋଭନାଂଶଗତେ ବାପି ଜାତସ୍ତ୍ୱାଗ୍ନିଷ୍ଟପୋ ଭବେତ୍ ।

ଦଶମାଧିପତି ଶୁଭ ଶୁଭଦୃଷ୍ଟିରେ ବା ଥିବ ଶୁଭଷଡ୍‌ବର୍ଗରେ ଯେବେ ବାସ କରଇ । ଏଯୋଗେ ଜନ୍ମିବା ସୁତ ଅଗ୍ନିପତି ହୁଏ ସତ ଜ୍ୟୋତିଷଶାସ୍ତ୍ରରମତ ଅନ୍ୟଥା ନୋହୁ ।

ଅଗ୍ନିସ୍ଥାନଗତେ ସୂର୍ଯ୍ୟେ ଭୂମିପୁତ୍ରେଣ ବା ଯୁତେ ।
କେନ୍ଦ୍ରାନ୍ୱିତେ ତଦୀଶେଽପି କ୍ରୂରମାଗ୍ନିଂ ବ୍ରଜେତ ସଃ ।

ରବି ଅଥବା ମଙ୍ଗଳ ଦଶମେ ହୋଇଲେ ମେଳ ଦଶମେଶ ଯେବେ କେନ୍ଦ୍ରଗତ ହୁଅଇ । ଏଯୋଗରେ ଯେତୁ ଜାତ ନିଷ୍ଠୁରଅଗ୍ନି ଉପୁତ ଅଗ୍ନି ମାନବରେ ପ୍ରଗ୍ରହ କରଇ ।

ଅଗ୍ନିଧିପେ ମନ୍ଦଯୁତେ ଚନ୍ଦ୍ରନାଥେନ ସଂଯୁତେ ।
କ୍ରୂରାଂଶେ କେନ୍ଦ୍ରସଂସ୍ଥେ ବା କ୍ରୂରମାଗ୍ନିଂ ବ୍ରଜେତ ସଃ ।

ଶନି ବା ଅଷ୍ଟମେଶ ସଙ୍ଗେ ଥିଲେ ଦଶମେଶ କିମ୍ବା କ୍ରୂରଅଂଶେ ଥିଲେ କେନ୍ଦ୍ର-ଭବନେ । ନିଷ୍ଠୁର ଅଦେଶ ନର ଅଗ୍ନିତେ କରେ ପ୍ରଗ୍ରହ ପ୍ରମାଣିତ ଅଟେ ଏ ଜ୍ୟୋତିଷ ବଚନେ ।

ମାନାଧିପେ କେନ୍ଦ୍ରଗତେ ଶୁଭଯୁକ୍ତେକ୍ଷିତେଽପି ବା
ଶୁଭଷଡ୍‌ବର୍ଗସଂଯୁକ୍ତେ ସୌମ୍ୟାମାଗ୍ନିଂ ବ୍ରଜେତ ସଃ ।

ପଞ୍ଚମଷଷ୍ଠି ଅଂଶରେ ଦଶମପତି କେନ୍ଦ୍ରରେ ଶୁଭଯୁକ୍ତ ଅବା ଦୃଷ୍ଟ ହୋଇଲେ ତହିଁ ।
ଏ ଯୋଗେ ଜନ୍ମିବା ନର ସୁନ୍ଦର ଅଦେଶକର କଷ୍ଟକୁଦେମାନବର ଯେ ଅଗରଇ

ଗନ୍ଧମାଦ୍ୟଯୁତେ ମାନେ ଭଙ୍ଗେ ସ୍ୱସ୍ଥଧୃକେଽପିବା ।
ନୀଚସ୍ଥେ ଧର୍ମଭ୍ରଂଶେଶେ ନୃସ୍ତମାଙ୍ଗଂ ବସେତ ସଃ ।

ଦଶମେ ମାନ୍ଦ ବା ରାହୁ, ଅଷ୍ଟମେ ବା କେତୁ ରାହୁ, ନୀଚରେ ଯଦ୍ୟପି ନବମପତି ଥିବ । ଏମନ୍ତ ଯୋଗେ ଯେ ଜାତ, ବସ୍ତ୍ର ର ଅନ୍ନ ନଯୁତ, ଅଶିତେ ବରେ ପ୍ରଗ୍ରବ ନଷ୍ଟେ ଜାଣିବ ।

ଶଶାଙ୍କେ ବର୍କସଂଯୁକ୍ତେ ଗୁରୁଶୁକ୍ରବଲାନ୍ୱିତେ ।
ମାଗ୍ରବତାଦଭାଗସ୍ଥେ ସତ୍କୀର୍ତ୍ତିସହିତୋ ଭବେତ୍ ॥

ଗୁରୁଶୁକ୍ରଦୃଷ୍ଟିଠାରେ ଶଶୀ ଥିବ ବର୍କଠରେ, ପାରାବତାଦ ଅଂଶରେ ସୁକୀର୍ତ୍ତି ହବେ

ତଦ୍ୱୀଶେ ଶୁଭସଂଯୁକ୍ତେ ଶୁଭମଧ୍ୟଗତେଽପି ବା ।
ଶୁଭଗ୍ରହ ଣାମଂଶେ ବା ସତ୍କୀର୍ତ୍ତିସହିତୋ ଭବେତ୍ ।

ଦଶମେଶ ଶୁଭଯୁକ୍ତ କିମ୍ବା ଶୁଭମଧ୍ୟଗତ, ଶୁଭ ନବାଂଶେ ବା ଥିଲେ ସୁକୀର୍ତ୍ତି ହବେ ।

ଲାଭସ୍ଥାନାଧିପେ ଓ ସୌମ୍ୟେ ସ୍ୱୋଚ୍ଚମିତ୍ରସ୍ୱବର୍ଗଗେ ।
ସୌମ୍ୟଷଷ୍ଟ୍ୟଂଶକେ ବାପି ସତ୍କୀର୍ତ୍ତିସହିତୋ ଭବେତ୍ ॥

ଦଶମାଧିପତି ସ୍ୱଭ ମିତ୍ରଷଡ୍ବର୍ଗରେ ଥିବ ଅଛରେ ଅବା ଉତ୍ତମ ଷଷ୍ଟି ଅଂଶରେ ।
ଏ ଯୋଗେ ଯେ ହୁଏ ଜାତ ହୁଅଇ ସୁକୀର୍ତ୍ତିମନ୍ତ ସତ୍ୟ ଏ ବଚନ ଜାଣିଥା ନରେ ।

ତଦ୍ୱୀଶେ ଦେବଲୋକସ୍ଥେ ସିଂହାଂଶେ ଶୁଭଦାୟକେ ।
ବଲପୂର୍ଣ୍ଣେ ବଲଗ୍ନେଶେ ସତ୍କୀର୍ତ୍ତିସହିତୋ ଭବେତ୍ ॥

ଦେବଲୋକେ ଦଶମେଶ ସିଂହାସନେ ଅବା ବାସ-ବଲେ ହୋଇଥିଲେ ଶଭ ଦଶମ ଈଶ । ଲଗ୍ନପତି ବଳଯୁକ୍ତ-ହେଲେ ସୁକୀର୍ତ୍ତି ସଂଯୁତ ଏ ଯୋଗରେ ଜାତନର କହେ ଜ୍ୟୋତିଷ ।

ପାପଗ୍ରହାଣାଂ ସମ୍ବନ୍ଧେ ମାନନାଥେ ବଲକ୍ଷୟେ ।
କ୍ରୂରଷଷ୍ଟ୍ୟଂଶସଂଯୁକ୍ତେଽସତ୍କୀର୍ତ୍ତିସହିତୋ ଭବେତ୍ ॥

କର୍ମେଶ ଦୁର୍ବଳ ହୋଇ ପାପସମ୍ବନ୍ଧକୁ ପାଇ କ୍ରୂରଷଷ୍ଟି ଅଂଶେ ଥିଲେ କୁକୀର୍ତ୍ତିଯୁତ

ଅପକୀର୍ତ୍ତିଯୁତୋ ଜାତଃ କର୍ମସ୍ଥେ ଚ ରବୌ ଶନୌ ।
ଫଣାଂଶକେ ପାପଦୃଷ୍ଟେ ପାପମଧ୍ୟଗତେଽପିବା ॥

ଅପକୀର୍ତ୍ତିଯୁତ ହବେ ଶନି ବା ରବି କର୍ମରେ, ପାପଯୁକ୍ତ କିମ୍ବା ଦୃଷ୍ଟ ପାପ ମଧ୍ୟରେ

ଶୁଭଗ୍ରହାଣାଂ ସମ୍ବନ୍ଧେ ମାନେ ତନ୍ନାସ୍ତିକେଽପିବା ।
ସ୍ୱୋଚ୍ଚେ ବା ସ୍ୱଗୃହେ ବାପି ଜାତୋ ମାନୀ ଦୃଢ଼ବ୍ରତଃ ।

ଶୁଭସମ୍ବନ୍ଧ ସହିତ ହେଲେ ମାନ ବା ତାନାଥ, ମାନନାଥ ଥିଲେ ଉଚ୍ଚରେ ବା ନିଜସ୍ଥରେ । ଏମନ୍ତ ଯୋଗେ ଯେ ଜାତ ହୁଅଇ ସେ ଦୃଢ଼ବ୍ରତ ଯାହା ମୁଖେ କହେ ତାହା କାର୍ଯ୍ୟରେ କରେ ।

ଇଙ୍ଗିତଜ୍ଞୋଽପି ମାନୀ ସ୍ୟାନ୍ମାନେ ଜୀବେଽଥବା ଗୁରୌ ।
ତଦୀଶେ ଶୁଭସମ୍ବନ୍ଧେ ଶୁଭମଧ୍ୟଗତେଽପିବା ॥

ଦଶମରେ ଥିଲେ ଜୀବ ଅବା ରବି ଥିଲେ ଶୁଭ ଶୁଭସମ୍ବନ୍ଧ ଲଭିଲେ ଦଶମନାଥ । କିମ୍ବା ଶୁଭମଧ୍ୟଗତ ହୋଇଲେ ଦଶମନାଥ ମାନୀ ଇଙ୍ଗିତଜ୍ଞ ନର ହୁଏ ନିଶ୍ଚିତ ।

ଯାମେ ମାନେ ପାପଦୃଷ୍ଟେ ତଦୀଶେ ନୀଚରାଶିଗେ ।
ପାପରାଶ୍ୟଂଶକେ ବାପି ମାନହୀନୋ ଭବେନ୍ନରଃ ।

ଦଶମ ପାପରେ ଯୁକ୍ତ ଅବା ହେଲେ ପାପଦୃଷ୍ଟ ଦଶମାଧିପତି ଥିଲେ ନୀଚରାଶିରେ କିମ୍ବା ପାପ ରାଶି ଅଂଶେ ଦଶମେଶ ଯେବେ ବସେ ମାନବକୁ ମାନହୀନ ନିଶ୍ଚୟ କରେ

ମାନାଧିପେ ଚରାଂଶସ୍ଥେ ସଞ୍ଚାରସହିତୋ ଭବେତ୍ ।
ସ୍ଥିରାଂଶେ ସ୍ଥୈର୍ଯ୍ୟମୁଦ୍ଦିଷ୍ଟଂ ମୃଗୟାବା ଦ୍ୱିଦେହଗେ ।

ଯେବେ ମାନପତି ବସେ ଚରରାଶି ବା ନବାଂଶେ ସଞ୍ଚାରଶୀଳ ହୁଅଇ ଏଣୁ ମାନବ ସ୍ଥିରେ ଥିଲେ ହୁଏ ସ୍ଥିର ବହୁଲେ ଦ୍ୱିସ୍ୱଭାବର ମୃଗୟାରୁ ଏଠୁ ଯାଇ ବସେ ସେଠାକ

ଷଷ୍ଠେଶେ କର୍ମରାଶିସ୍ଥେ କର୍ମେଶେ ମନ୍ଦସଂଯୁତେ ।
କେତେ ତ୍ରିକୋଣଗେ ବାପି ଦାସୀଦାସାନ୍ୱିତୋ ଭବେତ୍ ।

ଷଷ୍ଠପତିକର୍ମେଥିବ କର୍ମପତିଶନିଯୋଗହେଲେକେନ୍ଦ୍ରେବାତ୍ରିକୋଣେବହୁଭୃତ ଭୃତ୍ୟ

କର୍ମାଧିପଷ୍ଠାଂଶପତୌ ଶନିସମ୍ବନ୍ଧସଂଯୁତେ ।
ଷଷ୍ଠାଧିପସ୍ୟ ସମ୍ବନ୍ଧେ ବହୁଦାସାନ୍ ବିନିର୍ଦ୍ଦିଶେତ୍ ।

କର୍ମେଶ ଯେଉଁ ନବାଂଶରେ ତାପତି ଶନିସଙ୍ଗରେ ଷଷ୍ଠେଶ ସମ୍ବନ୍ଧ ଥିଲେ ବହୁଭୃତ୍ୟ

ଶୁଭଗ୍ରହେଣ ସଂଦୃଷ୍ଟେ କର୍ମରାଶୌ ତଦୀଶ୍ୱରେ ।
ଲଗ୍ନପୁଣ୍ୟେଣ ବା ଯୁକ୍ତେ ବହୁଦାସାନ୍ ବିନିର୍ଦ୍ଦିଶେତ୍ ।

କର୍ମପତି କର୍ମସ୍ଥାନ ଶୁଭଦୃଷ୍ଟି ଠାରେ ଥିବ, ଶନିଯୁକ୍ତ ହୋଇଥିଲେ ବହୁଭୃତ୍ୟ ।

କର୍ମନାଥେନ ବା ଯୁକ୍ତେ ପ୍ରଶ୍ନେ ପୂର୍ବଂ ବିନିର୍ଦ୍ଦିଶେତ୍ ।
ତତ୍ର ଚ ପାପସଂଯୋଗେ ଜାନ୍ଦୌର୍ବଲ୍ୟମାଦିଶେତ୍ ॥

ସେବକର ପ୍ରଶ୍ନରେ ତନୁ କର୍ମନାଥବଳ ଦେଖି ସନ୍ତୋଷଅସନ୍ତୋଷ ବିଷୟ କହିବ କର୍ମେ ଥିଲେ ପାପଖଗ ଦୁର୍ବଳ ହୁଅଇ ଜାଣ ଦଶମଭାବଫଳ ଏରୂପେ କହିବ ।

ଇତି ଦଶମଭାବବିଚାରଃ ।

---

* ସମ୍ବନ୍ଧ ଗୃହରୁ ଅଂଶ ଦୃଷ୍ଟି ସଂଯୋଗ ଜାଣିବ ।

### ଅଥ—ଲାଭସ୍ଥାନ ବିଚାରଃ

ଅନ୍ୟୈର୍ଦାର୍ଥାବାପ୍ତିଂ ପାଦାବପି ବାମକର୍ଣ୍ଣଚନ୍ଦ୍ରାଂ ଚ ।
କୁବ୍ଜତ୍ୱକେଶଶୋଭାଂ ଜ୍ୟେଷ୍ଠାନ୍ ବୃଦ୍ଧାଦ୍ୱିନାନ୍ୟେଷାଂ ।

ଏକାଦଶରୁ ଅର୍ଥଲାଭ ଚନ୍ଦ୍ରା, କେବଳପାଦ, ବାମକର୍ଣ୍ଣବାଲତା ।
କୁବ୍ଜତା, କେଶଶୋଭା, ଜ୍ୟେଷ୍ଠଭାଇ, ଜ୍ୟେଷ୍ଠର ଧନ ଚନ୍ଦ୍ରାଙ୍କର ତହିଁ ।

ଲାଭେଶ୍ୱରେ କେନ୍ଦ୍ରଗତେ ତ୍ରିକୋଣେ ବା ସଂସ୍ଥିତେ ।
ଲାଭେ ବା ପାପସଂଯୁକ୍ତେ ଧନଲାଭମୁଦୀରୟେତ୍ ।

ଲାଭେଶ କେନ୍ଦ୍ରେ ବା ତ୍ରିକୋଣେ ଥିଲେ, ଲାଭସ୍ଥାନ ପାପଯୁକ୍ତ ହୋଇଲେ ।
ଧନଲାଭ ହୁଏ ଶାସ୍ତ୍ରେ ବୋଲେ ।

ଲଗ୍ନାଧିପେ ଲାଭଗତେ ଲାଭେଶେ ଧନମ ଗତେ ।
ତାବୁଭୌ କେନ୍ଦ୍ରଗୌ ବାପି ଧନଲାଭମୁଦୀରୟେତ୍ ।

ଲଗ୍ନପତି ଥିବ ଲାଭଗୃହରେ, ଲାଭେଶ ଥିବ ଧନଭବନରେ ।
କିମ୍ବା ଏ ଦୁହେଁ ରହିଲେ କେନ୍ଦ୍ରରେ, ବହୁଧନଲାଭ ମାନବ କରେ ।

ଲାଭେଶଯୁକ୍ତରାଶୀଶେ ଶୁଭଗ୍ରହନିରୀକ୍ଷିତେ ।
ଶୁଭଗ୍ରହାଣାଂ ମଧ୍ୟସ୍ଥେ ଧନଲାଭମୁଦୀରୟେତ୍ ।

ଲାଭେଶଯୁକ୍ତ ରାଶିର ଈଶ୍ୱର, ରହିଲେ ଶୁଭଗ୍ରହ ଦୃଷ୍ଟି ପାଇ ।
କିମ୍ବା ଶୁଭଦ୍ୱୟ ମଧ୍ୟରେ ଥିଲେ, ଧନ ମିଳଇ ଏ ଯୋଗେ ଜନ୍ମିଲେ ।

ଶୁଭମଧ୍ୟଗତେ ଲାଭେ ତତ୍ପାଣେ ବା ତଥା ସ୍ଥିତେ ।
ପାରାବତାଦ୍ୟଂଶଗତେ ଧନଲାଭମୁଦୀରୟେତ୍ ॥

ଲାଭଭବନ ଅବା ଲାଭପତି, ଦୁଇ ଶୁଭମଧ୍ୟେ କଲେ ବସତି ।
ପାରାବତାଦ ଅଂଶରେ ରହିଲେ । ଧନ ମିଳଇ ଏ ଯୋଗେ ଜନ୍ମିଲେ ।

ଲାଭନାଥସମାଯୁକ୍ତନବାଂଶାଧିପତୌ ଶୁଭେ ।
ବିତ୍ତାଧିପେନ ସଂଦୃଷ୍ଟେ ଧନଲାଭମୁଦୀରୟେତ୍ ॥

ଲାଭନାଥଯୁତ ନବାଂଶପତି, କଲେ ଶୁଭଗୃହ ପଦରେ ବସତି ।
ଧନାଧିପ ତାଙ୍କୁ ଦେଖିଲେ ଯେବେ, ଧନଲାଭ ହୁଅଇ ଏହି ଯୋଗେ ॥

ଲାଭାଧିପସମାଯୁକ୍ତଦ୍ରେକ୍କାଣଭାଗପତୌ ଶୁଭେ ।
ଲଗ୍ନେଶ୍ୱରେଣ ସଂଦୃଷ୍ଟେ ଧନଲାଭମୁଦୀରୟେତ୍ ।

ଲାଭପତି ଥିବ ଯେଉଁ ଦ୍ରେଷ୍କାଣେ, ତାପତି ଯେବେ ଥିବ ଶୁଭସ୍ଥାନେ ।
ଲଗ୍ନାଧିପତି ତାଙ୍କୁ ଦେଖେ ଯେବେ । ବହୁ ଧନ ଲାଭ କରଇ ତେବେ ।

ପାପଗ୍ରହାଣାଂ ସମ୍ବନ୍ଧେ ଧନହାନିଂ ବିନିର୍ଦ୍ଦିଶେତ୍ ।
ଲାଭେଶସ୍ୟେନ୍ଦ୍ରଦୃଗ୍ଯୋଗାଦ୍ଧନପ୍ରାପ୍ତିଂ ବିନିର୍ଦ୍ଦିଶେତ୍ ॥

ପାପସମ୍ବନ୍ଧୁଁ ହୁଏ ଧନହାନି, ଲାଭେଶ ଦୃଗରୁ ଲାଭ ବଖାଣି ।

ଲାଭେଶ୍ୱରେନ୍ଦ୍ରଦୃଗ୍ଯୋଗାତ୍ସର୍ବୋପକଳାଦପି ।
କଳାବଳବଶେନୈବ ଦ୍ରବ୍ୟଲାଭଂ ବିନିର୍ଦ୍ଦିଶେତ୍ ।

ସବୁଠାରୁ ଯେ ଗ୍ରହ ବଳବନ୍ତ । ତାର ଦଶାଁ ବା ଧନ ହୁଏ ପ୍ରାପ୍ତ ।

ଲାଭେ ପାପେ ତଦ୍ଦୃଷ୍ଟେ ବା ଧନହାନିଂ ବିନିର୍ଦ୍ଦିଶେତ୍ ।
ଲାଭେଶେ ପାପସମ୍ବନ୍ଧେ ଧନନାଶଂ ବିନିର୍ଦ୍ଦିଶେତ୍ ।

ପାପଗ୍ରହ ରହିଲେ ଲାଭଘରେ । କିମ୍ବା ଦୃଷ୍ଟ ହେଲେ ପାପଦୃଷ୍ଟିରେ । ପାପ-ସମ୍ବନ୍ଧ ଥିଲେ ଲାଭେଶରେ । ଧନବିନାଶ ଘଟେ ଏ ଯୋଗରେ ।

କର୍ଣ୍ଣସ୍ଥାନେଶ୍ୱରେ ସୌମ୍ୟେ ଶୁଭଦୃଷ୍ଟିସମନ୍ୱିତେ ।
କର୍ଣ୍ଣେ ଧ୍ରୁବେ ବଳଚିତ କର୍ଣ୍ଣଭରଣମିଷ୍ୟତେ ।

କର୍ଣ୍ଣପତି (ଲାଭେଶ) ଶୁଭଗ୍ରହ ହୋଇଲେ । ଶୁଭଦୃଷ୍ଟି ଯୋଗାଦି ବା ଲଭିଲେ । କର୍ଣ୍ଣାଧିପ ହୋଇଲେ ବଳବାନ । କର୍ଣ୍ଣଭୂଷଣ ମିଳଇ ବହନ ।

ପାପଗ୍ରହାଣାଂ ସମ୍ବନ୍ଧେ ଛିନ୍ନାଂଶୋଽହ ଭବିଷ୍ୟତି ।
ଲାଭେଶାତ୍ସ୍ତ୍ରୀଦ୍ୱାଦଶେଶଦ୍ୱା କର୍ଣ୍ଣଦୌଃଖ୍ୟଂ ବିନିର୍ଦ୍ଦିଶେତ୍ ॥

ପାପଗ୍ରହ ସମ୍ବନ୍ଧୁଁ ଭୂଷହୀନ । ଲାଭେଶ ବା ସହଜେଶରୁ କର୍ଣ୍ଣ । ଚିନ୍ତା କରିବ ଘଟିବେ ବଧନ ।

ତଦୀଶେ ଶୁଭସମ୍ବନ୍ଧେ କର୍ଣ୍ଣସୌଖ୍ୟଂ ବିନିର୍ଦ୍ଦିଶେତ୍ ।
ତଦୀଶେ ପାପସମ୍ବନ୍ଧେ କର୍ଣ୍ଣରୋଗଂ ବଦନ୍ତି ଚ ॥

ଶୁଭ ସମ୍ବନ୍ଧରେ ଥିଲେ କର୍ଣ୍ଣେଶ । କର୍ଣ୍ଣ ସୁଖଲାଭ ହୁଏ ଅବଶ୍ୟ । କର୍ଣ୍ଣେଶ ପାପ ସମ୍ବନ୍ଧେ ରହିଲେ । କର୍ଣ୍ଣରୋଗ ଜନମେ ଯୋଗ ଥିଲେ ।

ଦ୍ୟୁମ୍ନାଜ୍ୟେଷ୍ଠାଂଶଲାଭେନ ଶୁଭପପଦଶାଦପି ।
ଶୁଭଗ୍ରହାଣାଂ ସମ୍ବନ୍ଧେ ଦୀର୍ଘମାୟୁର୍ବିନିର୍ଦ୍ଦିଶେତ୍ ।

ଶୁଭ ପାପ ସମ୍ବନ୍ଧ ଲାଭେ ଦେଖି । ଜ୍ୟେଷ୍ଠ ଭ୍ରାତାଦି ଭାଷିବ ବିଶେଷି । ଶୁଭ ସମ୍ବନ୍ଧେ ଦୀର୍ଘଆୟୁ ଲେଖି ।

ପାପାନ୍ୱିତେ ପାପଦୃଷ୍ଟେ ତଦ୍ଧନଂ ପ୍ରବଦନ୍ତି ହି ।
ଲାଭନାଥସ୍ୟ ସ୍ପର୍ଶେର୍ବା ଦୃଗ୍ଯୋଗାଦ୍ଧନମାପ୍ନୁୟାତ୍ ॥

ପାପସଂଯୁତ ବା ପାପରେ ଦୃଷ୍ଟି ହେଲେ ଲାଭସ୍ଥ ଜ୍ୟେଷ୍ଠ ବିନଷ୍ଟ

ଛିଦ୍ରାଶିନାଥଦଗ୍ଧାଗାର୍ ଦବ୍ୟପ୍ରାପ୍ତି ମୁଦୀରୟେଚ୍ ।
ଲଭସଣିବଣାଦେବଂ ଚନ୍ଦ୍ରସ୍ୟେନ୍ଦ୍ରତମାନ୍ ନରଃ ।
ଇତି ଅଷ୍ଟମଭାବଃ ।

---

ଅଥ ବ୍ୟୟଭାବଫଳବିଚାରଃ ।
ବ୍ୟୟଭବନାଦ୍ ବ୍ୟୟମଖିଲଂ ପତନଂ ନରକେ ଚ ବୈକଲ୍ୟଂ ।
ବାମାକ୍ଷିଚରଣଯୁଗଳଂ ଶୟନସ୍ତ୍ରୀନଙ୍ଗ ବନ୍ଧନଂ ଶେଢ୍ ପ୍ରାଜ୍ଞାଃ ।

ନରକଗତ, ପତନ—ବ୍ୟୟ, ଅଙ୍ଗର ବିକଳ, ବାଆଁ ଆଖି, ଅଷ୍ଟପାଦଦୁଇ ।
ଶୟନସ୍ଥାନ ବନ୍ଧନ ଦ୍ୱାଦଶଭାବରୁ ଏହାର ଯୋଗ ଅନୁରୂପେ ଫଳ ହୋଇ ।

ବ୍ୟୟେ ପାପସମାଯୁକ୍ତେ ତଦୀଶେ ପାପଖେଚରେ ।
ପାପଗ୍ରହେଣ ସଂଦୃଷ୍ଟେ ପାପମୂଳାଦ୍ଧନକ୍ଷୟଃ ।

ବ୍ୟୟେଶ ବା ବ୍ୟୟଭାବ ପାପଯୁକ୍ତ ହୋଇଥିବ କିମ୍ବା ପାପଦୃଷ୍ଟି ଠାରେ ଥିବ ।
ବ୍ୟୟେଶ ହେଲେ ବା ପାପ ପାପକର୍ମେ ରତ ଲୋକ ହୁଅଇ ତା ଧନ ପାପେ ଯିବ ।

ମନ୍ଦମାନ୍ଦ୍ୟଗୁସଂଯୁକ୍ତେ ବ୍ୟୟେ ବା ଛଦ୍ମହାର୍ଦ୍ଧପେ ।
ତଦ୍ୱଂଶକସମାଯୁକ୍ତେ ପାପମୂଳାଦ୍ଧନକ୍ଷୟଃ ।

ଶନି ଗୁଳିକ ରାହୁର ସଙ୍ଗେ ଥିଲେ ବ୍ୟୟେଶର କିମ୍ବା ବ୍ୟୟରେ ଥିଲେ ଏମାନେ ।
କିମ୍ବା ବ୍ୟୟର ଈଶ୍ୱର ଥିଲେ କ୍ରୂର ଗ୍ରହଙ୍କର ପାପେ ଧନ ତେଜଥାନ୍ତି ଜନେ

ବ୍ୟୟାଧିପସମାଯୁକ୍ତନବମ୍ଭାଗପତୌ ଶୁଭେ ।
ଶୁଭାଂଶେ ଶୁଭମଧ୍ୟସ୍ଥେ ଧର୍ମମୂଳାଦ୍ଧନକ୍ଷୟଃ ।

ବ୍ୟୟେଶ ଯେ ନବାଂଶର ସ୍ୱାମୀ ହେଲେ ତାଙ୍କ ଈଶ୍ୱର ଶୁଭଗ୍ରହାଦିରେ ଥିଲେ ବା
କିମ୍ବା ଶୁଭଗ୍ରହଦୁଇ ମଧ୍ୟରେ ରହିଲେ ସେହି ଧର୍ମକର୍ମେ ଅର୍ଥବ୍ୟୟ ହୋଇ ।

ଗୁରୁଶୁକ୍ରୌ ବ୍ୟୟେ ବାପି ବୁଧଚନ୍ଦ୍ରୌ ଶୁଭେକ୍ଷିତୌ ।
ପାରବତାଦିଭାଗସ୍ଥୌ ଧର୍ମମୂଳାଦ୍ଧନକ୍ଷୟଃ ।

ଗୁରୁ ବା ଶୁକ୍ର ବ୍ୟୟଭାବେ ଯେ କୋଷ୍ଠରେ ବାସକରନ୍ତି, ଶୁଭଦୃଷ୍ଟ ହେ ବା ବୁଧ ଶଶୀ
ରହିଥିଲେ, କିମ୍ବା ସେହି ପାରବତାଦିରେ ରହିଥିଲେ ଧର୍ମେ ସରେ ଧନସମ୍ପତ୍ତି ।

ବ୍ୟୟାଧିପେ ତ୍ରିକୋଣସ୍ଥେ କେନ୍ଦ୍ରେ ପାପନିରୀକ୍ଷିତେ ।
ପରୁଷଷ୍ଟ୍ୟଂଶକେ ବାପି ପାପମୂଳାଦ୍ଧନବ୍ୟୟଃ ।

ତ୍ରିକୋଣେ ଅବା କେନ୍ଦ୍ରରେ ରହିଲେ ପାପଦୃଷ୍ଟିରେ କିମ୍ବା ଶନି ଷଷ୍ଟି ଅଂଶପକେ
ଯଦ୍ୟପି ରହେ ବ୍ୟୟେଶ ପାପକାର୍ଯ୍ୟେ ଧନନାଶ ହୁଅଇ ଜାଣିବ ସୁଜ୍ଞ ନରେ ।

ପାପେନ କର୍ମନାଥେନ ଦୃଷ୍ଟେ ଯୁକ୍ତେ ବ୍ୟୟେଶ୍ୱରେ ।
ଶତ୍ରୁନୀଚଗୃହଗତେ ପାପମୂଲାଦ୍ଧନକ୍ଷୟଃ ।

ପାପ ହୋଇ କର୍ମେଶ୍ୱର ଥିଲେ ବ୍ୟୟେଶ ସଙ୍ଗର କିମ୍ବା ଦେଖୁଥିଲେ ବ୍ୟୟେଶଙ୍କୁ
ଶତ୍ରୁ ବା ନୀଚଗୃହରେ କିମ୍ବା ଏ ଦ୍ୱେସ୍ଥାଣ ତବେ ବ୍ୟୟେଶ ଥିଲେ ନାଶେ ଧନକୁ

ଶୁଭେନ କର୍ମନାଥେନ ଦୃଷ୍ଟେ ଯୁକ୍ତେ ବ୍ୟୟେଶ୍ୱରେ ।
ସ୍ୱୋଚ୍ଚମିତ୍ରସ୍ୱବର୍ଗସ୍ଥେ ଧର୍ମମୂଲାଦ୍ଧନବ୍ୟୟଃ ॥

କର୍ମପତି ଶୁଭ ହେବ ବ୍ୟୟେଶ ସଙ୍ଗରେ ଥିବ କିମ୍ବା ବ୍ୟୟେଶଙ୍କୁ ଦେଖୁଥିଲେ ।
ଉଚ୍ଚରେ ବା ମିତ୍ର ନିଜ ଷଡ୍‌ବର୍ଗେ ଥିଲେ ବିଗଜ ଧର୍ମ କର୍ମେ ଧନବ୍ୟୟ ବୋଲେ ।

ବ୍ୟୟେଶେ ଚତୁର୍ଥାନେ ବା ଶତ୍ରୁନାଥଯୁତେକ୍ଷିତେ ।
ଶୁଲ୍କବାଦ୍ୟପ୍ରମାଦାଚ୍ଚ ଶତ୍ରୁମୂଲାଦ୍ଧନକ୍ଷୟଃ ।

ଷଷ୍ଠପତି ସହିତରେ କିମ୍ବା ତାହାର ଦୃଷ୍ଟିରେ ଦୁର୍ବଳ ବ୍ୟୟେଶ ଥିଲେ ଯହି ।
କିମ୍ବା ଶତ୍ରୁ ସଙ୍ଗର ରହିଥିଲେ ବ୍ୟୟେଶର ଶତ୍ରୁମୂଳେ ଧନକ୍ଷୟ ହୋଇ ।

ବ୍ୟୟେଶେ ଦାରନାଥେନ ଚତୁର୍ଥାନେ ତେନ ବା ।
ଦୃଷ୍ଟେ ଯୁତେ ବା ଶୁକ୍ରାଂଶେ ସ୍ତ୍ରୀହେତୋର୍ଧନନାଶନମ୍ ॥

ଚତୁର୍ଥାନ ସପ୍ତମେଶ ଯୁକ୍ତ ବା ଦୃଷ୍ଟ ବ୍ୟୟେଶ ହୋଇ ରହିଥିଲେ ଶୁକ୍ରଅଂଶେ ।
ନାରୀ ହେତୁ ଧନନାଶ ହୁଅଇ କହେ ଜ୍ୟୋତିଷ ଯେବେ ଏଯୋଗ ଜାତ ହେବଜେ

ତାଦୃଶେ ବ୍ୟୟନାଥେଽସ୍ମିନ୍ ଯୁକ୍ତେ ଦୃଷ୍ଟେଽଥବା ଭବେତ୍ ।
ତଥା ବନ୍ଧେନ୍ଦ୍ର ଭୌମେନ ଭ୍ରାତୃମୂଲାଦ୍ଧନକ୍ଷୟଃ

ଭୃଗୁ ଅବା ସହଜେଶ ଯୁକ୍ତ ବା ଦୃଷ୍ଟ ବ୍ୟୟେଶ ଶୁକ୍ରଅଂଶେ ଯେବେ ଥାଏ ରହି ।
ଭାଇ ହେତୁ ଧନନାଶ ହୁଅଇ କହେ ଜ୍ୟୋତିଷ ଗ୍ରନ୍ଥ ବିଗ୍ରହ ଗଣକ ଭଣି ।

ପୁତ୍ରସ୍ଥାନେଶ୍ୱରେଣାପି ବଲସ୍ଥାନେନ ସଂଯୁତେ ।
ଦୃଷ୍ଟେ ବ୍ୟୟେଶେ ଶୁକ୍ରାଂଶେ ପୁତ୍ରମୂଲାଦ୍ଧନବ୍ୟୟଃ ॥

ଦୁର୍ବଳ ପଞ୍ଚମପତି ଯୁକ୍ତ ବା ଦୃଷ୍ଟ ହୁଅନ୍ତି ଶୁକ୍ରଅଂଶେ ଥାଇ ବ୍ୟୟେଶ୍ୱର ।
ଏଯୋଗେ ଜାତ ଯେଉଁ ନର ପୁତ୍ରହେତୁ ଧନ ତାର ନାଶ ହୁଏ ଗଣକେ ଉଚ୍ଚରି ।

ପିତୃସ୍ଥାନେଶ୍ୱରେଣାପି କାରକେଣାପି ବା ଯୁତେ ।
ବ୍ୟୟେଶେ ଦୃଷ୍ଟିସମ୍ବନ୍ଧେ ପିତୃମୂଲାଦ୍ଧନବ୍ୟୟଃ ।

ପିତୃକାରକ ଅଥବା ପିତୃସ୍ଥାନପତି ଅବା ବ୍ୟୟପତି ସଙ୍ଗେ ଥିଲେ ଯହିଁ ।
କିମ୍ବା ତାଙ୍କର ଦୃଷ୍ଟିରେ ବ୍ୟୟପତି ବାସକରେ ପିତା ଲାଗି ଧନ ହୁଏ ନଷ୍ଟ ।

ଏବଂ ମାତୃପଯୋଗେନ ଯୁକ୍ତେ ଦୃଷ୍ଟେ ବ୍ୟୟାଧିପେ ।
ଚନ୍ଦ୍ରେଣ ବଲବେ ମାତୃମୂଲାଦ୍ଧନବ୍ୟୟଃ ॥

ମାତୃଗଣ ଯୁକ୍ତ ଦୃଷ୍ଟ ହୋଇ ଯେବେ ବ୍ୟୟାଧୀଶ ପାପସଙ୍ଗେ ଅବା ପାପଘରେ ।
ରହିଥିଲେ ଏ ଯୋଗରେ ମାଛା ଲଗ ଧନ ସବେ ଭଗ୍ନରହ ସୁଷ୍ଠି ବଚଉବେ ॥

ଝଲସ୍ଥାନେ ସ୍ଥ୍ରୁ ଋପେଣେ ଝ୍ରବସ୍ଥଶ୍ୟଂଶକେଽପିବା ।
ନୀଚାଂଶେ ନୀଚସ୍ଥଣୌ ବା ଦେହବୈକଲ୍ୟମାଦିଶେତ୍ ।

ପାପଗ୍ରସ୍ତ ବା ନବାଂଶେ ନୀଚସ୍ଥିତି ବା ନୀଚାଂଶେ ଥିଲେ ବଳସ୍ଥାନ ବ୍ୟୟପତି
ହୁଅଇ ଅଙ୍ଗ ବିକଳ ଜାଣିବ ନରେ ସକଳ ବିବେଚନା କର ଧୀରେ ଅତି ।

ଭନ୍ତୁପାପସମାଯୋଗେ ବ୍ୟୟେ ତଦ୍ଭାବନାଯୁତେ ।
ମନ୍ଦମନ୍ୟଗୁଣାଂଯୁକ୍ତେ ଦେହବୈକଲ୍ୟମାଦିଶେତ୍ ।

ବ୍ୟୟ ବା ତାଭନାୟକ ସଙ୍ଗେ ଥିଲେ ଭନ୍ତୁପାପ ଶନି ମାନ୍ଦ ସନ୍ତୁ ସଙ୍ଗେ ଯୁକ୍ତ
ହୋଇଥିଲେ ବ୍ୟୟେଶ୍ୱର ବିକଳ ହୁଏ ଶରୀର ମହାମତି ପଣ୍ଡିତଙ୍କ ମତ ॥

ବ୍ୟୟେଶେ ପାପସ୍ଥଶ୍ୟଂଶେ କ୍ରୂରାଂଶେ କ୍ରୂରସଂଯୁତେ ।
ପାପଗ୍ରହେଣ ସଂଦୃଷ୍ଟେ ନରକେ ନିପତିଷ୍ୟତି ॥

ବ୍ୟୟେଶେ ପାପରାଶିରେ କିମ୍ବା ପାପନବାଂଶରେ ଅବା ହୋଇଥିଲେ ପାପଯୁକ୍ତ
ଅଥବା ପାପଦୃଷ୍ଟିରେ ରହିଲେ ନରକଘୋରେ ମାନବ ହୁଅଇଟି ପତିତ ॥

ନରକେ ପତନଂ କ୍ରୂରାଦ୍ୟାନ୍ତମାଦିଯୁତେ ବ୍ୟୟେ ।
ଷଷ୍ଠାଧିପେନ ସଂଦୃଷ୍ଟେ ରନ୍ଧ୍ରନାଥେନ ବା ଯୁତେ ॥

ରାହୁ ବା ମାନ୍ଦରେ ଯୁକ୍ତ ଅବା ଷଷ୍ଠପତି ଦୃଷ୍ଟ କିମ୍ବା ଅଷ୍ଟମେଶ ଯୁକ୍ତ ହୋଇ ।
ରହିଥିଲେ ବ୍ୟୟେଶ୍ୱର ନରକଗତ ମୂଢର ଜାତକର ସ୍ପୃହାରେ ଘଟଇ ।

ବ୍ୟୟେଶଯୁକ୍ତଷଷ୍ଠାଂଶେ କ୍ରୂରଭାଗାଦିସଂଜ୍ଞକେ ।
କ୍ରୂରଗ୍ରହେଣ ସଂଦୃଷ୍ଟେ ନରକେ ପତନଂ ଭବେତ୍ ॥

କ୍ରୂରଷଷ୍ଠ୍ୟଂଶେ ରହି କ୍ରୂରଗ୍ରହ ଦୃଷ୍ଟ ହୋଇ ଥିଲେ ବ୍ୟୟେଶ ନରକ ପାଇ ।

ଚନ୍ଦ୍ରାର୍କୟୋର୍ଯୋ ବଲବାନ୍ ତଦୁକ୍ତସ୍ୟାଂଶନାୟକଃ ।
ଗୁରୁର୍ବା ଚନ୍ଦ୍ରଶୁକ୍ରୌ ବା ଭୂମିଜାର୍କୌ ବା ଜ୍ଞସୂର୍ଯଜୌ ।
ଦେବଲୋକଂ ପିତୃଲୋକଂ ତିର୍ଯକ୍ ନରକମେବ ଚ ।
ତେଷାଂ ନ୍ୟୁଚ୍ଚାଦ୍ ଦ୍ରେଷ୍କାଣୈସ୍ତତ୍ଲୋକଃ ଶ୍ରେଷ୍ଠ ଉଚ୍ୟତେ ॥

ରବି ଚନ୍ଦ୍ରଙ୍କ ମଧ୍ୟରେ ଯେ ବଳଷ୍ଠ, ସେ ଯେଉଁଠାରେ ସେ ଯେବେ ହୁଏ ଗୁରୁ
ଦ୍ରେଷ୍କାଣ । ଦେବଲୋକ ପାଏ ନର, ହେଲେ ସେ ଚନ୍ଦ୍ର ଶୁକ୍ରର ପିତୃଲୋକ ଲାଭ
ହୁଏ ଜାଣ୍ଡ ରବି ବା କୁଜ ଦ୍ରେଷ୍କାଣ ହୋଇଥିଲେ ତାହାପୁଣ ପଶୁପକ୍ଷୀ କୁଳେ
ହୁଏଜାତ, ବୁଧବା ଶନିଦ୍ରେଷ୍କାଣେ ନରକପତନ ଭବେଣେ ମରଣ ହୋଇଲେ ତାବସଧୀ

ଉଚ୍ଚସ୍ଥେ ଶ୍ରେଷ୍ଠଲୋକାଃ ସ୍ୟାତ୍ ନୀଚେ ନୀଚତ୍ୱମାପ୍ନୁୟାତ୍ ।
ମୃତ୍ୟୁସ୍ଥିତିରେ ସମ୍ପ୍ରାପ୍ତିରଚ୍ୟାନ୍ତସ୍ଥ ମହର୍ଷିଭିଃ ।

ପୂର୍ବୋକ୍ତ ଦ୍ରେଷ୍କାଣ ଅଂଶ ହେବେ ଉଚ୍ଚେ ଦଶରେ ବାସ ସେଲେଖରେ କରେ ବୃଶସ୍ତ
ଥାନ୍ତି । ସମରେ ସମତା ପାଇ, ନୀଚରେ ନୀଚ ହୁଅଇ ଏକଥା ଭବିଷ୍ୟଭଜନନ୍ତୁ ।

ଶୁଭେ ଦ୍ରେଷ୍କାଣେ ବ୍ୟୟେ ବାପି ସୌମ୍ୟଖେଚରବୀକ୍ଷିତେ ।
ଦେବଲୋକାଦଭାଗସ୍ଥେ ସ୍ବର୍ଗପ୍ରାପ୍ତିର୍ଭବିଷ୍ୟତି ॥

ଶୁଭଗ୍ରହ ଉଚ୍ଚହୋଇ ବ୍ୟୟରେ ଯଦି ରହିଲ ଅବା ଶୁଭଗ୍ରହଦୃଷ୍ଟ ହୋଇ ।
ଦେବଲୋକାଦିଭାଗରେ ଶୁଭଥିଲେ ବ୍ୟୟଘରେ ମାନବକୁ ସ୍ବର୍ଗଲାଭ ହୋଇ ॥

ଦେବେନ୍ଦ୍ରେ କର୍ମଗଣେଶେ ବ୍ୟୟରାଶିଗତେଽପି ବା ।
ଶୁଭଗ୍ରହେଣ ସଂଦୃଷ୍ଟେ ସ୍ବର୍ଗପ୍ରାପ୍ତିର୍ଭବିଷ୍ୟତି ॥

ଗୁରୁ ହେଲେ କର୍ମେଶ୍ବର କିମ୍ବା ଥିଲେ ବ୍ୟୟଘର ତହିଁ ଶୁଭଦୃଷ୍ଟି ହେବେ ଥାଇ ।
ମରଣେ ଲଭେ ମାନବ ନିଶ୍ଚୟ ସ୍ବର୍ଗଭବ ଏକଥା ଅନ୍ୟଥା କେବେ ନୋହି ।

ନେତ୍ରେଶେ ଶୁଭସଂଯୁକ୍ତେ ଶୋଭନାଂଶସମନ୍ବିତେ ।
ଶୁଭଖେଚରସମ୍ବନ୍ଧେ ତନ୍ନେତ୍ରସ୍ୟ ଶୁଭଂ ବଦେତ୍ ॥

ବ୍ୟୟନାଥ ଶୁଭଯୁକ୍ତ କିମ୍ବା ଶୁଭଅଂଶେ ସ୍ଥିତ ଅବା ଶୁଭଦୃଷ୍ଟ ଥିଲେ ହୋଇ ।
ନେତ୍ରସୁଖଲଭେ ନର ଅଟଇ ଏ ସତ୍ୟଗିର ଅନ୍ୟଥା ଅଶୁଭ ଜାଣ ଭାଇ ।

ଅନ୍ୟଥା ଚେତ୍ତୁଦେନ୍ଦ୍ରାଣାଂ ପାପ୍ମସ୍ୟୋରପି ତଥା ।
ତତ୍ପ୍ରଶ୍ନୋଦିତଂ ସର୍ବଂ ଧର୍ମଭାବେ ପ୍ରଦର୍ଶିତଂ ।

ପୂର୍ବଯୋଗ ନ ଘଟିଲେ ନେତ୍ରର ବିନାଶ ବୋଲେ, ପାଦର ବିଚାର ଏହିପରି ।
ବିଚାରିବ ବ୍ୟୟଘରୁ, ଧନଭାବର ଫଳରୁ ନେତ୍ରଚନ୍ତା କହିବ ସୁପରି ।

ଗୁରୁଶୁକ୍ରବୁଧାସ୍ତତ୍ର ବାହନଂ ନର୍ଦିଶେଦ୍ବୁଧଃ ।
ବାହନୋକ୍ତାଦିକଂ ସର୍ବଂ ଇତହ ପ୍ରବଚନ୍ତ୍ୟେତ୍ ।

ଗୁରୁ ଶୁକ୍ର ବୁଧ ଯେବେ ବ୍ୟୟଗୃହରେ ରହିବେ ଲଭଇ ବହୁ ବାହନ ନର ।
ଚତୁର୍ଥଭାବଫଳରେ ବାହନଚନ୍ତା ପ୍ରକାରେ ଦ୍ବାଦଶରେ ସବୁ ଚନ୍ତା କର ।

ଶୁଭଗ୍ରହାଣାଂ ସମ୍ବନ୍ଧେ ବ୍ୟୟେ ତଦ୍ଭାବନାୟକେ ।
ଦୋଲାଂ ଭୂ ମଞ୍ଚ ପ୍ରବଦେତ୍ ଶଯ୍ୟାଦିସୁଖଂ ତଥା ।

ବ୍ୟୟଘର, ବ୍ୟୟପତି ଶୁଭଯୋଗ କିମ୍ବା ଦୃଷ୍ଟି ଲଭିଲେ ମଞ୍ଚାଦିର ସୁଏଂ ନର ।

ବ୍ୟୟେଶେ ସ୍ବୋଚ୍ଚରାଶିସ୍ଥେ ଶୁଭବର୍ଗସମନ୍ବିତେ ।
ଶୁଭଗ୍ରହେଣ ସଂଦୃଷ୍ଟେ ପର୍ଯ୍ୟଙ୍କଶୟନଂ ବଦେତ୍ ।

ଶୁଭବର୍ଗେ ବା ଉଚ୍ଚରେ ଅଥବା ଶୁଭଦୃଷ୍ଟିରେ ଥିଲେ ଶୁଏ ପଲଙ୍କ ଉପରି ।

ବଚନମଞ୍ଚଶୟନଂ ବ୍ୟୟେଶେ ପରମୋଚ୍ଚଗେ ।
ଲଗ୍ନନାଥେନ ବା ଦୃଷ୍ଟେ ମଣିରତ୍ନାଦିଭୂଷିତଂ ॥

ଅଷ୍ଟମରେ ବ୍ୟୟେଶ୍ୱର ବା ସ୍ୱର୍ଗେଶ ଦୃଷ୍ଟ ହୋଇ ଥିଲେ, ଉତ୍ତମଖଟ ମଞ୍ଚରେ ( ଶୁଏ )।

ପାପଗ୍ରହାଣାଂ ସମ୍ବନ୍ଧେ ବ୍ୟୟସ୍ୟ ତଦ୍ଭାବନାଯୁତେ।
ନୃଗଂଶେ ନୃକ୍ଷେତ୍ରଦୃଷ୍ଟେ ଶୟନାଦସୁଖଂ ନହି।

ବ୍ୟୟ ବା ତାବନାଯୁକ ପାପଯୁକ୍ତ ଅବା ଦୃଷ୍ଟ ନୃଗଂଶେ ବା ଶଯ୍ୟାସୁଖଦୂରେ।

ବ୍ୟୟେଶେ ପାପଖେଟେଽପି ସ୍ୱୋଚ୍ଚମିତ୍ରସ୍ୱଗୃହିଣିଗେ।
ତସ୍ୟ ନାଥେଽପି ତତ୍‌ସ୍ଥାନେ ଶୟନାଦସୁଖଂ ବଦେତ୍॥

ପାପ ହୋଇ ବ୍ୟୟେଶ୍ୱର ଉଚ୍ଚରେ ବା ମିତ୍ରଘର ନିଜଘରେ ବା ବଲେ ସ୍ଥାନ।
ବ୍ୟୟପତି ସେହିସ୍ଥାନେ ରାପତି ଥିଲେ ବ୍ୟୟରେ ସୁଖରେ ନମିଳଇ ଶୟନ।

ମୀନେ ବ୍ୟୟେ ବା ଲଗ୍ନେଶେ ଶନ୍‌ନାଥେନ ବୀକ୍ଷିତେ।
ମନ୍ଦମାନ୍ଦ୍ୟାଗୁସଂଯୁକ୍ତେ ଶୟନାଦସୁଖଂ ନହି॥

ଷଷ୍ଠେଶ ଦୃଷ୍ଟି ଉପରେ ଲଗ୍ନେଶ ଥିଲେ ବ୍ୟୟରେ କିମ୍ବା ମୀନେ ଭରଥିଲେ ବାସ।
ଶନିରାହୁ ବା ମାନ୍ଦ୍ୟରେ ଯୁକ୍ତଥିଲେ ବ୍ୟୟେଶ୍ୱରେ ନମିଲେ ଶୟନସୁଖବସ॥

— ❀ —

ଅଥ ଉପାସନାଜ୍ଞାନଂ।

ପଞ୍ଚମେ ଭୃଗୁସଂଯୁକ୍ତେ ଚନ୍ଦ୍ରେଣ ସହିତେ ତଥା।
ତାଭ୍ୟାଂ ଦୃଷ୍ଟେଽଥବା ପୂର୍ଣ୍ଣେ ସ୍ତ୍ରୀଦେବୋପାସ୍ତିମାଦିଶେତ୍।
ପଞ୍ଚମେ ପୁଂଗ୍ରହଯୁତେ ପୁଂଦେବୋପାସ୍ତିମାଦିଶେତ୍।
ପଞ୍ଚମେ ଭାନୁସମ୍ବନ୍ଧେ ସୂର୍ଯ୍ୟଶଙ୍କରଭଜନଂ।

ଶୁକ୍ର ଓ ଚନ୍ଦ୍ରସଂଯୁତ ହୋଇଥିଲେ ପଞ୍ଚମରେ କିମ୍ବା ସେ ଦୁହିଙ୍କ ଦୃଷ୍ଟି ପଞ୍ଚମେ ଥିଲେ। ଦେବୀ ସେବୀ ହୁଏ, ପୁରୁଷ ପଞ୍ଚମ ଗୃହେ ଥିଲେ ବା ଦେଖିଲେ ଭକ୍ତ ଦୈବତା ଭଜେ। ପଞ୍ଚମେ ରହିଲେ ରବି ସୂର୍ଯ୍ୟ ବା ଶଙ୍କରେ ଭାବ ଭକ୍ତି କରଇ ଏଯୋଗ ଶାସ୍ତ୍ରରେ ବୋଲେ।

ଚନ୍ଦ୍ରେ ତଥାବଧେ ଜାତେ ଯକ୍ଷିଣୀ ଦେବତା ଭବେତ୍।
ସ୍କନ୍ଦୋ ବା ଭୈରବୋ ବାପି ସୌମ୍ୟସମ୍ବନ୍ଧବୀକ୍ଷିତେ।
ଉର୍ଣ୍ଣାସ୍ୟା ସାରଦା ସୌମ୍ୟେ ବସ୍ତୁର୍ବା ସାକ୍ଷିକୋ ଗୁରୌ।
ଚାମୁଣ୍ଡା ପଞ୍ଚମେ ଶୁକ୍ରସମ୍ବନ୍ଧେ ତୁ ବଦେଦ୍ୱିଶେଷତଃ।

ଚନ୍ଦ୍ରସମ୍ବନ୍ଧେ ଯକ୍ଷିଣୀ ସେବଇ, ବୁଧରେ ପୁଣି କାର୍ତ୍ତିକ ଅବା ଭୈରବେ ସେବା କରଇ। ବୁଧ ସମ୍ବନ୍ଧେ ସାରଦା, ଗୁରୁରେ ବସ୍ତୁରେ ପୂଜା ଶୁକ୍ରରେ ଚାମୁଣ୍ଡା ସେବାକରନ୍ତି ସେହି।

ଶନୌ ପ୍ରେତାଶନା ପ୍ରୋକ୍ତା ଶ୍ମଶାନନିଲୟା ଭବେତ୍ ।
ରାହୁକେତ୍ୱଂଶଯୁକ୍ତେ ତୁ ପରପୀଡ଼ନଦେବତା ।

ଶନିରେ ପିଶାଚୀ ଭକ୍ତି ଶ୍ମଶାନ ସେବା କରନ୍ତି, ରାହୁ କେତୁରେ ଚାଣ୍ଡାଳ କର୍ମ କରନ୍ତି । ପୂର୍ବକଥିତ ଯୋଗରେ ଗ୍ରହ ନୀଚନିଚାଂଶରେ ଥିଲେ ସେବା କଳପାଇଁ ନୋହେତ୍ ପଦାର୍ଥ ।

ସୌମ୍ୟେକ୍ଷିତେଷୁ ସର୍ବେଷୁ ମୃଦ୍ୱଂଶାଦିଗତେଷୁ ଚ ।
ଉଦ୍ଦେବ ସୌମ୍ୟତା ବାଚ୍ୟା କ୍ରୂରାଂଶେ କ୍ରୂରତା ଭବେତ୍ ।

ମନ୍ତ୍ରଯୋଗମାନଙ୍କରେ ଶୁଭଗ୍ରହର ଦୃଷ୍ଟିରେ ଅବା ମୃଦ୍ୱଂଶାଦିରେ କହିଲେ ଭାବ । ସେ ଯୋଗକାରକ ଗ୍ରହ, ଶୁଭ ସେବା ଚାରି କହି ଅନ୍ୟଥା ଅନିଷ୍ଟ ଦେବତା ସେବା ଲକ୍ଷ ।

ଦଶ୍ୟାଦିଗ୍ରହଯୋଗେନ ଉଦ୍ଦେବଭଜନଂ ଭବେତ୍ ।
ଲଗ୍ନାଧିପସ୍ୟ ସମ୍ବନ୍ଧେ ନିଜେ ଉନ୍ନିଜମାଦିଶେତ୍ ।
ଶତ୍ରୁକ୍ଷେ ଶତ୍ରୁଭୂତଃ ସ୍ୟାତ୍ ସମର୍କ୍ଷେ ସମତା ଭବେତ୍ ।

ଦୁଇ ବା ତତୋଧିକ ଗ୍ରହର ସମ୍ବନ୍ଧ ପଞ୍ଚମଘରେ ଠାରେ ଥିଲେ ସେ ସେ ଦେବତାପୂଜେ ମାନବ । ପଞ୍ଚମସ୍ଥାନପତିର ଲଗ୍ନାଧିପ ହେଲେ ନିଜ ଅନୁକୂଳ ହୁଅନ୍ତି ଉପାସିତ ଦେବ । ଶତ୍ରୁରେ ଶତ୍ରୁ ଜାଣିବ ସମେ ସମ ବର୍ତ୍ତିବ ଏହିପରି ଦ୍ୱାଦଶଫଳ ସବୁ କହିବ ।

ଲଗ୍ନାଦ୍ଦ୍ୱାଦଶଭାବାନାଂ ଫଳଂ ପ୍ରୋକ୍ତଂ ମୟାଧୁନା ।
ସଂଗୃହ୍ୟ ସାରମଖିଳମଧ୍ୟାୟସ୍ତୁ ପ୍ରଥମୋ ଗତଃ ॥

ଇତି ଶ୍ରୀସର୍ବାର୍ଥଚିନ୍ତାମଣୌ ଭାବଫଳନିରୂପଣୋ ନାମାଷ୍ଟମୋଽଧ୍ୟାୟଃ ।

ଲଳଦେବଂ ଗୁରୁଂ ନତ୍ୱା ପଦ୍ମାକ୍ଷିଚରଣ ସୂରିଣା ।
ପଦ୍ୟେନ ରଚିତା ଟୀକା ଶିଷ୍ୟସ୍ୟ ଉପକାରିକା ।

ପ୍ରଥମଖଣ୍ଡଃ ସମାପ୍ତଃ ।



ପ୍ରିଣ୍ଟର ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି, "କଟକ ପ୍ରିଣ୍ଟିଂ କମ୍ପାନୀ ଲିମିଟେଡ" ସନ ୧୯୩୬

# ଶ୍ରୀମଦ୍ଭାଗବତ

ମହାମୁନି ଶ୍ରୀବ୍ୟାସଦେବଙ୍କ ଉକ୍ତ ଅଠରହଜାର ଶ୍ଳୋକ ଏବଂ ଶ୍ରୀଧରସ୍ୱାମିକୃତ ଟୀକା ଓ ଓଡ଼ିଆ ଭାଷାରେ ପ୍ରତିଶ୍ଳୋକର ନବାକ୍ଷର ପଦ୍ୟାନୁବାଦ ସହ ପ୍ରକାଶିତ ହୋଇଅଛି।

ବାରସ୍କନ୍ଧ ଏକତ୍ର ନେଲେ ମୂଲ୍ୟ ଟ ୮୲

| | | |
|---|---|---|
| ଭାଗବତ ମାହାତ୍ମ୍ୟ | ... ... | ଟ ୦ |
| ପ୍ରଥମସ୍କନ୍ଧ | ... | ଟ ୦ ୵ |
| ଦ୍ୱିତୀୟସ୍କନ୍ଧ | ... | ଟ ୦। |
| ତୃତୀୟସ୍କନ୍ଧ | ... ... | ଟ ୦ ୶ |
| ଚତୁର୍ଥସ୍କନ୍ଧ | ... | ଟ ୧୲ |
| ପଞ୍ଚମସ୍କନ୍ଧ | ... | ଟ ୦ ୶ |
| ଷଷ୍ଠସ୍କନ୍ଧ | ... | ଟ ୦ ୳ |
| ସପ୍ତମସ୍କନ୍ଧ | ... ... | ଟ ୦ ୷ |
| ଅଷ୍ଟମସ୍କନ୍ଧ | ... ... | ଟ ୦ ୳ |
| ନବମସ୍କନ୍ଧ | ... | ଟ ୦ ୳ |
| ଦଶମସ୍କନ୍ଧ | ... | ଟ ୨। |
| ଏକାଦଶସ୍କନ୍ଧ | ... | ଟ ୧। |
| ଦ୍ୱାଦଶସ୍କନ୍ଧ | ... | ଟ ୦।୶ |

ପ୍ରତି ସ୍କନ୍ଧ ଭିନ୍ନ ଭିନ୍ନ ଭାବରେ ମଧ୍ୟ ମିଳେ।

ସର୍ବାର୍ଥ ଚିନ୍ତାମଣି—ଦ୍ୱିତୀୟ ଭାଗ ଟ ୧୲

ପଞ୍ଚସ୍ୱରା—ମାଲକଙ୍କାନର ପ୍ରଧାନ ପୁସ୍ତକ ଟ ୦।୵

ଶ୍ରୀମଦ୍ଭଗବଦ୍ଗୀତା—ଶ୍ଳୋକ ଟୀକା ଅନୁବାଦ ସହିତ ଓଡ଼ିଆରେ ସବୁଠାରୁ ବଡ଼ ଓ ସୁବୋଧ ଟ ୧ ୷

ଅଧ୍ୟାତ୍ମ ରାମାୟଣ—ଶ୍ଳୋକ ଏବଂ ଚତୁର୍ଦ୍ଦଶାକ୍ଷର ଅନୁବାଦ ସହ ଟ ୨୲

କେବଳ ଅନୁବାଦ ୧୲